# ପୃଥିବୀର ଲୋକକଥା

## (ରୁଷିଆର ଲୋକକଥା)

### ପ୍ରଥମ ଭାଗ

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍.ସି., ଏଲ୍ ଏଲ୍.ବି.,
ଚିଫ୍ ଜୁଡ଼ିସିଆଲ ମାଜିଷ୍ଟ୍ରେଟ (ରିଟାର୍ଡ୍), ଆଡ଼ଭୋକେଟ
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍.ଏ., ବି.ଇଡ଼ି.,

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ, ପୋ: ଦିଘାଳ, ଜିଲ୍ଲା-ପୁରୀ
ଡି-୨୧୯, ସେକ୍ଟର-୬, ସି.ଡ଼ି.ଏ., କଟକ-୧୪

PRUTHIBIR LOKAKATHA
(Rushia Lokakatha)
Pratham Bhaga

# ପୃଥିବୀର ଲୋକକଥା

## (ରୁଷିଆର ଲୋକକଥା)

ପ୍ରଥମ ଭାଗ



*ପ୍ରକାଶକ :*
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ : ଦିଘାଳ, ଜି : ପୁରୀ
ଜି-୨୧୯, ସେକ୍ଟର-୬, ସି.ଡ଼ି.ଏ., କଟକ-୧୪
ଫୋନ୍ ନମ୍ବର-୯୨୩୮୫୯୭୭୭୫

*ପ୍ରଥମ ପ୍ରକାଶ :*
ସ୍ନାନ ପୂର୍ଣ୍ଣିମା-୨୦୦୦

*ପ୍ରଚ୍ଛଦପଟ :*
ଶ୍ରୀ ରବି ନାରାୟଣ ନାୟକ

*ଅକ୍ଷରସଜ୍ଜା :*
ଗୁଡ୍ଡୁ ଡିଟିପି ଆର୍ଟ
ଏଫ୍-୬୨୬, ସେକ୍ଟର-୭, ସିଡିଏ, କଟକ

*ମୁଦ୍ରାକର :*
ସୁରେଖା ପ୍ରିଣ୍ଟର୍ସ
ଅଲିଶା ବଜାର, କଟକ-୨

ମୂଲ୍ୟ - ୧୨.୦୦ ଟଙ୍କା

# - ସୂଚୀପତ୍ର -

# ଛୋଟ ଠେକୁଆ

(ମାନ୍‌ସୀ ରୂପକଥା)

ହ୍ରଦରେ ବର୍ଷଯାକ ପାଣି । କୂଳ ତାର ସନ୍ତସନ୍ତିଆ । ସେଥିପାଇଁ ଘାସ ଘଞ୍ଚ ହୋଇ ବଢ଼େ । ଏଇମିତି ଘାସ ଭିତରେ ଗୋଟିଏ ଛୋଟ ଠେକୁଆ ବସା ବାନ୍ଧି ରହିଗଲା । ସେ ସେଠି ଘାସ ଖାଏ । ଘାସ ଉପରେ ନାଚେ କୁଦେ ଆଉ ଡିଏଁ । ସେଥିରେ ସେ ପାଏ ଆନନ୍ଦ । ଦୁଃଖ, କଷ୍ଟ, ଭୟ କଣ ସେ ଜାଣେ ନାହିଁ ।

ଘାସ ସିନା ନରମ, ଘାସର ଧାର ଅଛି । ଥରେ ଘାସର ଧାର ବାଜି ତାର ଓଠ କଟିଗଲା । ଆଗରୁ ସେ କଷ୍ଟ କଣ ଜାଣି ନାହିଁ । ଏଇ ସାମାନ୍ୟ କଷ୍ଟରେ ସେ ଉତ୍‌କ୍ଷିପ୍ତ, ବିରକ୍ତ, ବ୍ୟସ୍ତ । ଏଥିପାଇଁ ଘାସ ଯେ ସଂପୂର୍ଣ୍ଣ ଦାୟୀ, ଏହା ହେଲା ତାର ସିଦ୍ଧାନ୍ତ । ସେ ଭାବିଲା ଘାସ ଯେ ସଂପୂର୍ଣ୍ଣ ଦାୟୀ, ଏହା ହେଲା ତାର ସିଦ୍ଧାନ୍ତ । ସେ ଭାବିଲା ଘାସ ଉପରେ ପ୍ରତିଶୋଧ ନେବାକୁ ହେବ । ତାକୁ ଜାଳି ପୋଡ଼ି ଧ୍ୱଂସ କଲେ ସେ ଏକ ଉଚିତ୍ ଶିକ୍ଷା ପାଇବ । ଏ ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିବାକୁ ତାକୁ ନିଆଁର ସାହାଯ୍ୟ ନେବାକୁ ହେବ । ସେଥିପାଇଁ ସେ ନିଆଁ ପାଖକୁ ଧାଇଁଲା । ନିଆଁକୁ କହିଲା- "ନିଆଁ, ନିଆଁ, ତୁ ହ୍ରଦ କୂଳର ଘାସକୁ ଜାଳିଦେ ।"

ଏ ପ୍ରକାର ଅନୁରୋଧ ନିଆଁ ପାଇଁ ନୂଆ । ସେ ତ ଠେକୁଆର ଅଧସ୍ତନ ବା ବୋଲକରା ନୁହେଁ । କ'ଣ ପାଇଁ ଏପରି ଏକ ଗୁରୁତର କାମ ସେ କରିବ ସେ ବି ଜାଣିବା ଉଚିତ । ତେଣୁ ସେ ପଚାରିଲା- "ଘାସ ତୋର କ'ଣ କଲା ?" ଠେକୁଆ କହିଲା- "ସେ ମୋ ଓଠକୁ କାଟି ଦେଲା ?"

ନିଆଁ ପଚାରିଲା- "କେମିତି ?"

ଠେକୁଆ କହିଲା- "ମୁଁ ଘାସ ଭିତରେ ଡେଉଁଥିଲି । ଘାସ ଧାର ବାଜି ମୋ ଓଠ କଟିଗଲା ।"

ନିଆଁ କହିଲା- "ଏଥିରେ ଘାସର ଦୋଷ କଣ ? ତୁ ଅସାବଧାନ ହେଲୁ। ତୋର ଓଠ କଟିଗଲା। ତୁ ସିନା ଦାୟୀ ହେବୁ। ଘାସକୁ ଅଯଥା ଦୋଷ କାହିଁକି ଦେଉଛୁ ?"

ନିଆଁର କଥା ଠେକୁଆ ମନକୁ ପାଇଲା ନାହିଁ। ନିଆଁ ଯେ ଘାସକୁ ସମର୍ଥନ କରୁଛି, ଏହା ହେଲା ଠେକୁଆର ବଦ୍ଧ ଧାରଣା। ତେଣୁ ସେ ନିଆଁ ଉପରେ ପଞ୍ଚମ। ତାକୁ ପାନେ ଦେବାପାଇଁ ନିଆଁର ପରମ ଶତ୍ରୁ ପାଣି ପାଖକୁ ଧାଇଁଲା।

ପାଣିକୁ କହିଲା- "ହେ ପାଣି, ହେ ପାଣି, ନିଆଁକୁ ତୁ ଲିଭାଇଦେ।"

ଏ ପ୍ରକାର ଅନୁରୋଧ ପାଣି ପକ୍ଷେ ଏକଦମ୍ ନୂଆ। ସେଥିପାଇଁ ସେ ଠେକୁଆକୁ ପଚାରିଲା- "ନିଆଁ ତୋର କ'ଣ କଲା ?"

"ସେ ହ୍ରଦ କୂଳ ଘାସକୁ ଜାଳିଲା ନାହିଁ।"

"ଘାସ ତୋ'ର କ'ଣ କଲା ?"

"ସେ ମୋ ଓଠକୁ କାଟିଦେଲା।"

"ଘାସ ତ ହ୍ରଦକୂଳରେ ବଢ଼ିଛି। ସେ ତ କୁଆଡ଼େ ଯାଇ ପାରିବ ନାହିଁ। ତେଣୁ ସେ ତୋର ଓଠ କିପରି କାଟିଲା।"

"ମୁଁ ଘାସ ଭିତରେ ଡେଉଁଥିଲି। ତାର ଧାର ମୋ ଓଠରେ ବାଜିବାରୁ ମୋ ଓଠ କଟିଗଲା।"

"ଏ ତ ତୋର ଅଣହୁସିଆରିର ଫଳ। ଏଥିରେ ଘାସ କିପରି ଦୋଷୀ ହେବ ?"

ଠେକୁଆଟି ଦେଖିଲା- ପାଣି ବି ଘାସର ପକ୍ଷ ସମର୍ଥନ କରୁଛି। ଏମାନଙ୍କୁ ଜବତ ନକଲେ, ଅନ୍ୟାୟ ବଢ଼ିଯିବ। ନିଜକୁ ରକ୍ଷା କରିବା ଅସମ୍ଭବ ହୋଇ ଉଠିବ। ତେଣୁ ସେ ଆଉ ଅପେକ୍ଷା ନକରି ବାଣୁଆ ପାଖକୁ ଗଲା।

ତାକୁ କହିଲା- "ହେ ବାଣୁଆ, ହେ ବାଣୁଆ, ତୋ ଶରରେ ପାଣିକୁ ଲାଛିଦେ।"

ବାଣୁଆ ତ ଠେକୁଆର ଜଣା ଶୁଣା ନୁହଁ। ଏ ପ୍ରକାର ଅନୁରୋଧ ସେ ବି ରକ୍ଷା କରିବ କାହିଁକି ? କଥାଟା ଜାଣିବା ପାଇଁ ସେ ପଚାରିଲା- "ପାଣି ତୋର କ'ଣ କଲା ?"

"ସେ ନିଆଁକୁ ଲିଭାଇଲା ନାହିଁ।"

"ନିଆଁ ତୋର କ'ଣ କଲା ?"

"ସେ ହ୍ରଦ କୂଳ ଘାସକୁ ଜାଳିଲା ନାହିଁ।"

"ଘାସ ତୋର କ'ଣ କଲା ?"

"ସେ ମୋ ଓଠ କାଟିଦେଲା।"

"ତୋ ଓଠ ଘାସ କେମିତି କାଟିଲା ?"

"ମୁଁ ଘାସରେ ଡେଉଁଥିଲି। ତାର ଧାର ବାଜି ମୋର ଓଠ କଟିଗଲା।"

"ଏଥିରେ ଘାସର ଦୋଷ କ'ଣ ?"

ବାଣୁଆ କଥା ଶୁଣି ଠେକୁଆ ବିରକ୍ତ। ଅସନ୍ତୁଷ୍ଟ। ଏ ଯେ ଘାସ ଦଳର, ଏଇଟା ତାର ବିଶ୍ୱାସ ହେଲା। ସେ ସେଠି ନରହି ମୂଷା ପାଖକୁ ଗଲା।

ତାକୁ କହିଲା- "ମୂଷା, ମୂଷା, ବାଣୁଆ ଧନୁର ଗୁଣ କାଟି ଦିଅନ୍ତୁ ନାହିଁ ?"

ମୂଷା ଠେକୁଆ ଜାତିର ଜୀବ। ଠେକୁଆକୁ ସେ ସମ୍ମାନ ଦିଏ। ଏଇଟା ତ ଠେକୁଆର ସାମାନ୍ୟ ଅନୁରୋଧ। ତେଣୁ ସେ ଭାବିଲା- କଥାଟା ତଳେ ପକାଇବା ତାର ଉଚିତ ହେବ ନାହିଁ। ତେଣୁ ଠେକୁଆର କଥା ସେ ମାନିଲା। ସାଙ୍ଗେ ସାଙ୍ଗେ ଠେକୁଆ ସାଥୀରେ ବାଣୁଆ ପାଖକୁ ବାହାରିଲା।

ମୂଷା ସାଥୀରେ ଠେକୁଆ ଆସୁଥିବାର ବାଣୁଆଟି ଦେଖିଲା। ମୂଷା ଯେ

କଣ ପାଇଁ ଆସୁଛି, ସେ କଥା ଠଉରାଇବାକୁ ବାଣୁଆର ଅସୁବିଧା କିଛି ହେଲା ନାହିଁ । ସେ ଟିକିଏ ଆଉ ଡେରି ନକରି ଧନୁଶର ଧରି ପାଣି ପାଖକୁ ବାହାରିଲା । ଆଗରେ ବାଣୁଆ, ତା ପଛକୁ ମୂଷା ଓ ଶେଷରେ ଠେକୁଆକୁ ଦେଖି ପାଣି ନିଜ ଆତ୍ମରକ୍ଷା ପାଇଁ ନିଆଁ ପାଖକୁ ବୋହିଗଲା । ନିଆଁ ଦେଖିଲା- ପାଣି ତା ଆଡ଼କୁ ମାଡ଼ି ଆସୁଛି । ସେ ଭୟରେ ଥରି ଉଠିଲା । ସିଧା ସେ ଯାଇ ହ୍ରଦ କୂଳର ଘାସ ଉପରକୁ ଡେଇଁ ପଡ଼ିଲା । ଘାସର ଅବସ୍ଥା ଏପରି କ୍ଷେତ୍ରରେ କଣ ହେବ, ଜାଣିବା ପାଇଁ ଠେକୁଆ ଘାସ ଭିତରେ ଯାଇ ଲୁଚିଲା । ଅଳ୍ପ ସମୟ ଭିତରେ ଚାରିଆଡ଼େ ନିଆଁ ଲାଗିଗଲା । ଘାସ ସବୁ ହୁ ହୁ ହୋଇ ଜଳିଲା । ଠେକୁଆଟି ଦେଖିଲା- ସେ ଯଦି ସେଠୁ ପଳାଇ ନଯିବ, ତାହାହେଲେ ସେ ବି ନିଆଁ ଭିତରେ ଜଳିପୋଡ଼ି ପାଉଁଶ ହୋଇଯିବ । ପ୍ରାଣ ବିକଳରେ ସେ ନିଆଁ ଭିତରେ ଦେଇ ପଦାକୁ ପଳାଇ ଆସିଲା । ଆସିଲା ବେଳେ ନିଆଁ ତା କାନରେ ଓ ଲାଙ୍ଗୁଡ଼ରେ ଲାଗିଗଲା । ସେ ଲିଭାଇ ଦେଲା ସତ କିନ୍ତୁ ତାହା ସିଝିଗଲା ।

ପଦାକୁ ଆସି ପଛକୁ ସେ ଅନାଇଲା । ହ୍ରଦ କୂଳର ଘାସ ସବୁ ପୋଡ଼ି ପାଉଁଶ ହୋଇଯାଇଛି । ତାର ରହିବା ସ୍ଥାନର ଚିହ୍ନ ବର୍ଣ୍ଣ ନାହିଁ । ଏଥର ସେ କେଉଁଠି ରହିବ, ସେ ବି ତାର ଏକ ଚିନ୍ତା । ନିଆଁରେ ପଳାଇ ଆସିଲା ବେଳେ ତା 'ର କାନ ଓ ଲାଙ୍ଗୁଡ଼ ଯେଉଁ ସିଝି ଗଲା, ସେଥିପାଇଁ ସେ କାହାକୁ ଦୋଷ ଦେବ ? ନିଜକୁ ? ତା ' ଛଡ଼ା ତା 'ର ଆଉ କ'ଣ ଗତି ଅଛି ?

କେତେ କାଳର ଏ କଥା । କେହି କହି ପାରିବେ ନାହିଁ । ଠେକୁଆଟି କୃତଘ୍ନ । ସେଥିପାଇଁ ତାକୁ ଦଣ୍ଡ ମିଳିଲା । ତାର ନିଦର୍ଶନ ଏବେ ବି ରହିଛି । ଏବେ ବି ସବୁ ଠେକୁଆଙ୍କର କାନ ଓ ଲାଙ୍ଗୁଡ଼ ସିଝିଲା ଭଳି ଦେଖାଯାଏ ।

ଏଥିରୁ କ'ଣ ଶିଖିବାର କିଛି ନାହିଁ ?



# ଘର ଚଟିଆ

(ମାନସୀ ରୂପକଥା)

ଘର ଚଟିଆରେ ଘର ଚଟିଆ ତୋ ମୁଣ୍ଡ କାହାପରି ?
ପାଣି ବାହାର କରିବା ପାଇଁ ଛୋଟ ଡଙ୍କିପରି ।
ଘର ଚଟିଆରେ ଘର ଚଟିଆ ତୋର ଥଣ୍ଟ କାହାପରି ?
ବରଫ ଭାଙ୍ଗିବା ପାଇଁ ବ୍ୟବହୃତ ଛୋଟ ସାବଳ ପରି
ଘର ଚଟିଆରେ ଘର ଚଟିଆ ତୋ ଜିଭ କାହାପରି ?
ହୁଲି ଡଙ୍ଗାରେ ବ୍ୟବହୃତ ସୁନ୍ଦର ଆହୁଲା ପରି
ଘର ଚଟିଆରେ ଘର ଚଟିଆ ତୋ ପିଠି କାହାପରି ?
ଜଳ ଯାତ୍ରା ପାଇଁ ବ୍ୟବହୃତ ସୁନ୍ଦର ଡଙ୍ଗା ପରି ।
ଘର ଚଟିଆରେ ଘର ଚଟିଆ ତୋର ପେଟ କାହା ଭଳି ?
ନଳୀ ରଖିବା ପାଇଁ ବ୍ୟବହୃତ ମୁଣି ଭଳି ।
ଘର ଚଟିଆରେ ଘର ଚଟିଆ ତୋ ଗୋଡ଼ କାହାଭଳି ?
ତମ୍ବୁକୁ ଧରି ରଖିବାକୁ ବ୍ୟବହୃତ ଦୁଇଟି ଖୁଣ୍ଟଭଳି ।
ଘର ଚଟିଆରେ ଘର ଚଟିଆ ତୋ ପକ୍ଷ କାହାପରି ?
ତମ୍ବୁଛାତ ପାଇଁ ବ୍ୟବହୃତ ଦୁଇଖଣ୍ଡ କନାପରି ।
ଘର ଚଟିଆରେ ଘର ଚଟିଆ ତୋର ପୁଚ୍ଛ କାହାପରି ?
କୁକୁର ଖାଇବା ପାଇଁ ବ୍ୟବହୃତ କାଠ କୁଣ୍ଡ ପରି ।



# ମୂଷା ଓ ଚଢ଼େଇ
## (ଚୁକ୍‌ଚୀ ରୂପକଥା)

ମୂଷା ଓ ଚଢ଼େଇ ଦୁଇଟି ସାଙ୍ଗ। ଏକାଠି ରହନ୍ତି। ବେଳେବେଳେ ଚଢ଼େଇଟି ଉଡ଼ିଯାଏ। ଜଙ୍ଗଲରେ ରହୁଥିବା ଲୋକମାନଙ୍କୁ ଶଂଖୁଳି ଆସେ। ମୂଷା ଏକଥା ଜାଣେ।

ଦିନେ ଭୋରରୁ ଚଢ଼େଇଟି ଚାଲିଗଲା। ଡେରି କଲା ନାହିଁ ପୁଣି ଫେରି ଆସିଲା। ମୁହଁ ତା'ର ମଳିନ।

ମୂଷା ଏସବୁ ଲକ୍ଷ୍ୟ କରିଛି। ମନରେ ତା'ର ବହୁ ଦ୍ୱନ୍ଦ। ସଂଦେହ। ସେଥିପାଇଁ ସେ ଚଢ଼େଇକୁ ପଚାରିଲା- "ତୋର ଜଂଗଲିଆ ଲୋକ କେଉଁଠିରେ ରହନ୍ତି ?"

"ଜେରଙ୍ଗାରେ।"

"ଜେରଙ୍ଗା କ'ଣ ?"

"ତମ୍ବୁ।"

"ସେ ତମ୍ବୁର ଛାତ କେଉଁଥିରେ ତିଆରି ?"

"ହରିଣର ଚମଡ଼ାରେ।"

"ତା'ର ବରଗା ?"

"ହରିଣ ହାଡ଼ରେ।"

"ସେମାନେ କେଉଁଥିରେ ଶୁଅନ୍ତି ?"

"ହରିଣ ଚମଡ଼ାରେ ତିଆରି ବିଛଣାରେ।"

"ସେମାନେ କ'ଣ ଖାଆନ୍ତି ?"

"ହରିଣର କିଭ ଓ ଆଖି ।"

"ସେମାନେ କେଉଁଠି ଡେରା ପକାଇଥିଲେ ?"

"ତାହା ନିଆଁରେ ପୋଡ଼ିଗଲା ।"

"ସେ ନିଆଁ ?"

"ବର୍ଷାରେ ଲିଭିଗଲା ।"

"ସେ ବର୍ଷା ପାଣି ?"

"ଚଢ଼େଇମାନେ ପିଇଦେଲେ ।"

"ସେ ଚଢ଼େଇ ?"

"ଉଡ଼ି ପଳାଇଲେ ।"



## କୋକିଶିଆଳୀର ଲାଙ୍ଗୁଡ଼ ବଡ଼ ଓ ଭାଲୁ ଆଉ ଠେକୁଆର ଲାଙ୍ଗୁଡ଼ ଛୋଟ କାହିଁକି ?

(ଓରୋଚି ରୂପକଥା)

କେଉଁ କାଳର କଥା । ସେତେବେଳେ କୌଣସି ପଶୁର ଲାଙ୍ଗୁଡ଼ ନଥିଲା । ଫଳରେ ତାଙ୍କ ଦେହରେ ମଇଳା ଲାଗିଲେ, ସେମାନେ ତାକୁ ଝାଡ଼ି ପାରୁ ନଥିଲେ। ମଶା, ଡାଉଁଶ ବା ଅନ୍ୟ କୌଣସି ପୋକ ଜୋକ ପଶୁମାନଙ୍କ ଦେହରେ ଲାଗିଲେ, ତାକୁ ସେମାନେ ହୁରୁଡାଇ ପାରୁ ନଥିଲେ । ଫଳରେ ପୋକ ଜୋକ ମାନେ ପଶୁମାନଙ୍କୁ କାମୁଡ଼ି ଅଶେଷ ଯନ୍ତ୍ରଣା ଦେଉଥିଲେ। ସେଇ ପରିସ୍ଥିତିରେ ପଶୁମାନେ ଥିଲେ ଅସହାୟ୍। କିଂକର୍ତ୍ତବ୍ୟବିମୂଢ଼। ଏ ଦୃଶ୍ୟ ମର୍ମନ୍ତୁଦ। ବେଦନାଦାୟକ। ଏହା ଦେଖି ଜଙ୍ଗଲର ଦେବତା ବ୍ୟସ୍ତ। ବ୍ୟଥିତ। ସେଥିପାଇଁ ତାଙ୍କର ଦୟା ହେଲା।

ସେମାନଙ୍କୁ ଏ ବିପଦରୁ ଉଦ୍ଧାର କରିବା ପାଇଁ କିଛି ଲାଙ୍ଗୁଡ଼ ସୃଷ୍ଟି କଲେ। ଯେ ଆଗ ଆସିବ, ସେ ଲାଙ୍ଗୁଡ଼ ଆଗ ନେବ। ଏଇ ଭିତ୍ତିରେ ଲାଙ୍ଗୁଡ଼ ବଣ୍ଟାଯିବ। ସେ ଏଇ ସର୍ତ୍ତ ରଖିଲେ। ଜଙ୍ଗଲର ପଶୁମାନେ ଏଇ ସର୍ତ୍ତରେ ଲାଙ୍ଗୁଡ଼ ଆସି ନେଇଯିବାକୁ ଖବର ପଠାଇଲେ। ଜଙ୍ଗଲର ନିଆଁ ଭଳି ଏ ଖବର ଜଙ୍ଗଲଯାକ ବ୍ୟାପିଗଲା। ପଶୁମାନେ ଏ ଖବର ପାଇ ଭାରି ଆନନ୍ଦ। ଲାଙ୍ଗୁଡ଼ଟିଏ ନେବାପାଇଁ ସମସ୍ତେ ବ୍ୟସ୍ତ। ଡେରି ନକରି ସେମାନେ ଜଙ୍ଗଲର ଦେବତାଙ୍କ ପାଖକୁ ଧାଇଁଲେ। ଲାଙ୍ଗୁଡ଼ ପାଇଁ ଭାଲୁ ଓ ଠେକୁଆ ସାଥୀ ହୋଇ ଧାଉଁଥିଲେ। ଯିବା ବାଟରେ ସେମାନଙ୍କର କୋକିଶିଆଳୀ ସାଥିରେ ଦେଖାହେଲା। କୋକିଶିଆଳୀ ତ ଧୂର୍ତ୍ତ, ଦୁଷ୍ଟ ଓ ବଦମାସ୍। ପରକୁ ହଇରାଣ କରିବାରେ ସେ ଧୁରନ୍ଧର। ସେଥିରେ ତାର ଆନନ୍ଦ ଓ ଆତ୍ମସନ୍ତୋଷ। ଭାଲୁ ଓ ଠେକୁଆକୁ ଦେଖୁ ଦେଖୁ ସେମାନଙ୍କୁ କିପରି ହଇରାଣ କରିବ ସେ କଥା ସେ ଚିନ୍ତା କଲା। ମନକଥା ମନରେ ଲୁଚାଇ ରଖିଲା। ସେମାନଙ୍କୁ ଦେଖି ଆନନ୍ଦରେ ଗଦ୍‌ଗଦ୍ ବୋଲି ଦେଖାଇ ହେଲା। ତାପରେ କହିଲା- "ତୁମେ ଦୁଇଜଣ କୁଆଡେ ଯାଉଛ ? ତୁମ ଦୁହିଁଙ୍କୁ ଦେଖି ମୁଁ ଭାରି ଖୁସୀ। ଆସ, ଟିକେ ବିଶ୍ରାମ ନେଇ ଗପ କରିବା।" ଭାଲୁ ଠେକୁଆ ସରଳ। ଛନ୍ଦ କପଟ ସେମାନେ ଜାଣନ୍ତି ନାହିଁ। ତେଣୁ ସେମାନେ କହିଲେ, "ଜଙ୍ଗଲର ଦେବତା ଲାଙ୍ଗୁଡ଼ ବାଣ୍ଟୁଛନ୍ତି। ଯିଏ ଆଗ ପହଞ୍ଚିବ ସେ ଭଲ ଲାଙ୍ଗୁଡ଼ ପାଇବ। ତେଣୁ ଆମେ ଦୁହେଁ ଜଙ୍ଗଲର ଦେବତାଙ୍କ ପାଖକୁ ଯାଉଛୁ। ତମେ ଆସୁନ, ଆମ ସାଥିରେ ଯିବ। ବିଶ୍ରାମ ନେଲେ ଡେରି ହୋଇଯିବ।"

କୋକିଶିଆଳୀ କହିଲା- "ଆରେ ଏତ ବଢ଼ିଆ କଥା। ଚାଲ, ମୁଁ ବି ତୁମ ସାଥୀରେ ଯିବି। ଡେରି କରି ଲାଭ ନାହିଁ। ଚାଲ ଜଲଦି ଜଲଦି ପଳାଇବା।" ତିନିହେଁ ଧାଇଁଲେ କିଛିବାଟ ଗଲାପରେ କୋକିଶିଆଳୀ କହିଲା- "ଦେବତା ତ ଆଖ ପାଖରେ ନାହାଁନ୍ତି। ସେ ତ ବହୁତ ଦୂରରେ ରହନ୍ତି, ତାଙ୍କ ପାଖରେ ପହଞ୍ଚିବାକୁ ବେଶ୍ ସମୟ ଲାଗିବ। ଖାଲି ପେଟରେ

ଏତେବାଟ ଯାଇ ହେବ ନାହିଁ। ଧାଇଁ ଧାଇଁ ଗଲେ ଆମେ ହାଲିଆ ହୋଇ ପଡ଼ିବା। ବିଶ୍ରାମ ନେବାକୁ ହେବ। ଫଳରେ ଡେରି ହୋଇଯିବ। ଅନ୍ୟ ପଶୁମାନେ ଆଗତୁରା ପହଞ୍ଚି ଲାଙ୍ଗୁଡ଼ ନେଇଯିବେ। ଅନ୍ୟ ପଶୁମାନେ ଆଗତୁରା ପହଞ୍ଚି ଲାଙ୍ଗୁଡ଼ ନେଇଯିବେ। ଆମେ ପହଞ୍ଚିଲା ବେଳକୁ ହୁଏତ ଆଉ ଲାଙ୍ଗୁଡ଼ ନଥିବ। ଫଳରେ ଯିବା ଖାଲି ବୃଥା ହୋଇଯିବ।"

କୋକିଶିଆଳୀର କଥା, ଭାଲୁ ଓ ଠେକୁଆ ମନକୁ ବେଶ୍ ପାଇଲା। ତେଣୁ ସେମାନେ ପଚାରିଲେ- "ତାହେଲେ ତୁମେ ଆମକୁ କ'ଣ କରିବାକୁ କହୁଛ ?"

କୋକିଶିଆଳୀ କହିଲା- "ଆମେ ଯଦି ପେଟେ ପେଟେ ଏଠି ଖାଇଦେବା ତେବେ ବାଟରେ ଆମକୁ ଆଉ ଭୋକ ହେବନି କି ଆମେ ଆଉ ହାଲିଆ ହେବାନାହିଁ। ଫଳରେ ଅନ୍ୟ ପଶୁମାନଙ୍କୁ ଟପି ଆମେ ଆଗତୁରା ଦେବତାଙ୍କ ପାଖେ ପହଞ୍ଚିଯିବା।"

ଠେକୁଆ ଓ ଭାଲୁ କୋକିଶିଆଳୀ କଥାରେ ରାଜି ହୋଇଗଲେ। ତେଣୁ କୋକିଶିଆଳୀ କହିଲା- "ମୁଁ ପାହାଡ଼ ଆରପଟରୁ ଆସିଲି। ସେଠି ବହୁତ କୋଳି ପାଚିଥିବାର ଦେଖିଲି। ତୁମେ ଦୁହେଁ ସେଠି ପେଟେ ପେଟେ କୋଳି ଖାଇ ଆସ। ମୁଁ ଯାଉଛି କେତେଟା ପକ୍ଷୀ ଧରି ଖାଇଦିଏ। ତାପରେ ସାଥୀ ହୋଇ ବାହାରିବା।"

କଥାଟା ଭାଲୁ ଓ ଠେକୁଆ ମନକୁ ପାଇଲା। କୋକିଶିଆଳୀର ଛନ୍ଦ ସେମାନେ ଜାଣି ପାରିଲେ ନାହିଁ। ତା କଥା ମାନି ପାହାଡ଼ ଆରପଟକୁ ଗଲେ।

ସେମାନେ ଚାଲିଗଲା ପରେ କୋକିଶିଆଳୀ ମୁହୂର୍ତ୍ତେ ଅପେକ୍ଷା କଲା ନାହିଁ। ଦେବତାଙ୍କ ପାଖକୁ ଝପଟିଲା। କେହି ପଶୁ ନ ପହଞ୍ଚିବା ପୂର୍ବରୁ ସେ ଆଗ ଦେବତାଙ୍କ ପାଖରେ ପହଞ୍ଚିଗଲା। ଫଳରେ ଜଙ୍ଗଲ ଦେବତା ତାକୁ

ଦେଖି ଖୁସି ହୋଇଗଲେ। ସବୁଠାରୁ ସୁନ୍ଦର ଲୋମପୂର୍ଣ୍ଣ ବଡ଼ ଲାଙ୍ଗୁଡ଼ଟିଏ ତାକୁ ଦେଲେ।

ଭାଲୁ ଠେକୁଆ ପାହାଡ଼ ଆରପଟକୁ ଗଲେ। ପ୍ରକୃତରେ ସେଠି ବହୁତ କୋଳି ପାଚିଥିଲା। ଏହା ଦେଖି ଉଭୟେ ଖୁସି। ମହା ଆନନ୍ଦରେ ଉଭୟେ କୋଳି ଖାଇବାକୁ ଲାଗିଲେ। ଅଳ୍ପ କେତେଟା କୋଳି ଖାଇ ନେବାରେ ଠେକୁଆର ପେଟ ପୁରିଗଲା। ଭାଲୁ ତ ପେଟୁ। ତାର ପେଟ କ'ଣ ସହଜରେ ପୁରୁଛି ? ଠେକୁଆ ଅପେକ୍ଷା କଲା। ଭାଲୁ ପେଟ ପୁରିବା ପର୍ଯ୍ୟନ୍ତ ଖାଇଲା। ଭାଲୁର ପେଟ ପୁରିବାରୁ ଉଭୟେ ପାହାଡ଼ ଏପଟକୁ ଆସିଲେ। କୋକିଶିଆଳୀକୁ ଖୋଜିଲେ। ତାର ଟେର ପାଇଲେ ନାହିଁ। ତଥାପି ତାକୁ ଅପେକ୍ଷା କଲେ। ବେଳ ଗଡ଼ିବାରୁ ଉଭୟେ ଦେବତାଙ୍କ ପାଖକୁ ବାହାରିଲେ।

ଭାଲୁ ଓ ଠେକୁଆ ଦେବତାଙ୍କ ପାଖରେ ପହଞ୍ଚିଲେ ସତ କିନ୍ତୁ ବହୁ ଡେରିରେ। ସେତେବେଳକୁ ସବୁ ପଶୁମାନେ ଲାଙ୍ଗୁଡ଼ ବାଙ୍କର ନେଇ ଯାଇଥିଲେ। ଦେବତାଙ୍କ ପାଖରେ ଗୋଟିଏ ମାତ୍ର ଲାଙ୍ଗୁଡ଼ ଆଉ ବାକି ଥିଲା।

ଭାଲୁ ଓ ଠେକୁଆଙ୍କୁ ଦେଖି ଦେବତା ବିରକ୍ତ ହେଲେ। ସେମାନେ ଦାୟିତ୍ୱହୀନ ବୋଲି ଭର୍ତ୍ସନା କଲେ। ଭାଲୁ ଓ ଠେକୁଆ ବହୁ ଅନୁନୟ ଓ ବିନୟ ହୋଇ କହିଲେ- "ପ୍ରଭୁ, ଆମର ଯେଉଁ ଡେରି ହେଲା, ସେଥିପାଇଁ ଆମେ ଦାୟୀ ନୁହଁ। ଆମେ ସରଳ। ସମସ୍ତଙ୍କୁ ବିଶ୍ୱାସ କରୁ। ତେଣୁ କୋକିଶିଆଳୀ ଆମକୁ ଫସାଇ ଦେଲା। ଆମେ ତାର ଠକାମିର ଶିକାର ହୋଇଛୁ।"

ଦେବତାଙ୍କର ଦୟା ହେଲା। କଥାଟା କଣ ଜାଣିବାକୁ ସେ ଚାହିଁଲେ। ତେଣୁ ଭାଲୁ ଓ ଠେକୁଆ ସମସ୍ତ ଘଟଣା ଗୋଟି ଗୋଟି କରି କହିଲେ। ସବୁ କଥା ଶୁଣି ସାରିବା ପରେ ଦେବତାଙ୍କର ଭାଲୁ ଓ ଠେକୁଆ ପ୍ରତି ଦୟା ହେଲା। ସେମାନଙ୍କୁ ସାହାଯ୍ୟ କରିବାକୁ ଦେବତା ଚାହୁଁଥିଲେ। କିନ୍ତୁ ତାଙ୍କ

ପାଖରେ ମାତ୍ର ଗୋଟିଏ ଲାଙ୍ଗୁଡ଼ ଥିଲା। ସେ ବି ଉପାୟ ଶୂନ୍ୟ। ଏ ଅବସ୍ଥାରେ କ'ଣ କରିବେ, ତାହା ହେଲା ଦେବତାଙ୍କର ଚିନ୍ତା। ସେ ଶେଷକୁ ତାଙ୍କ ପାଖରେ ଥିବା ଲାଙ୍ଗୁଡ଼ଟିକୁ ଦୁଇଭାଗ କରିଦେଲେ। ଖଣ୍ଡେ ଭାଲୁକୁ ଓ ଅନ୍ୟଖଣ୍ଡକ ଠେକୁଆକୁ ଦେଲେ। ଭାଲୁ ଓ ଠେକୁଆ ତ ଦୋଷୀ। ପ୍ରତିବାଦ କରିବାର୍ ଜୁ ବି ତାଙ୍କର ନାହିଁ। ତେଣୁ ଯାହା ମିଳିଲା, ବିନା ପ୍ରତିବାଦରେ ତାକୁ ଗ୍ରହଣ କଲେ। ଦେବତାଙ୍କୁ ମୁଣ୍ଡିଆ ମାରି ବିଦାୟ ନେଲେ।

ଫେରିଲା ବାଟରେ ଭାଲୁ କହିଲା- "ଆମେ କୋକିଶିଆଳୀକୁ ଜାଣୁ। ତାର ପ୍ରକୃତି ସହିତ ଆମେ ପରିଚିତ। ଏପରି ଧୂର୍ତ୍ତ ଠକ ଓ ବଦମାସକୁ ଆମେ ବିଶ୍ୱାସ କଲୁ। ଆମେ ଫଳ ପାଇନଥାନ୍ତୁ ତ କିଏ ଆଉ ପାଇଥାନ୍ତା।"

ଭାଲୁ ଓ ଠେକୁଆ ଯେଉଁ ଠକାମିର ଶୀକାର ହେଲେ, ତାହା କାଳ କାଳକୁ ରହିଗଲା। ସେଇଦିନ ଠାରୁ କୋକିଶିଆଳୀର ଲାଙ୍ଗୁଡ଼ ଲୋମଯୁକ୍ତ ବଡ଼। ଭାଲୁ ଓ ଠେକୁଆର ଲାଙ୍ଗୁଡ଼ ଛୋଟ।



## ପଶୁପକ୍ଷୀ ପରିଷଦ

(ତୋଫଲାର ପରିକଥା)

ଜଙ୍ଗଲରେ ପଶୁପକ୍ଷୀ କେଉଁ ଅନାଦି କାଳରୁ ରହୁଛନ୍ତି, କେହି କହିପାରିବେ ନାହିଁ। କିନ୍ତୁ ଯୁଗ ଯୁଗ ଧରି ଏକାଠି ରହି ବି ସେମାନଙ୍କ ମଧ୍ୟରେ ସ୍ନେହ, ଶ୍ରଦ୍ଧା, ମମତା ଓ ଦରଦ ନଥାଏ। ସେମାନେ ସମସ୍ତେ ସ୍ୱାର୍ଥପର। ନିଜ ନିଜ ପାଇଁ ବ୍ୟସ୍ତ। ବଂଚିବା ପାଇଁ ସେମାନଙ୍କ ମଧ୍ୟରେ କଳି, ଶତୃତା ଓ ରକ୍ତାକ୍ତ ସମର। ଜଣକୁ ମାରି ଖାଇବାରେ ଅନ୍ୟ ଜଣକର ଆନନ୍ଦ। ଶାନ୍ତି ଶୃଙ୍ଖଳା ସେମାନଙ୍କ ପାଇଁ ସ୍ୱପ୍ନ।

ପଶୁପକ୍ଷୀମାନଙ୍କ ମଧ୍ୟରେ ସଦ୍‌ଭାବ ହେଉ। ସେମାନେ ଶାନ୍ତିରେ ଓ

ଶୃଙ୍ଖଳାସହ ରହନ୍ତୁ। ଏହା ବହୁ ପଶୁପକ୍ଷୀ ଚାହିଁଲେ ବି ସେମାନଙ୍କୁ ଏକଜୁଟ କରି ଏ କଥାଟା ପକାଇବା କାହା ପକ୍ଷରେ ସମ୍ଭବପର ହେଲା ନାହିଁ।

ବରଖାନ ତୋଫଲାର୍‌ର ପ୍ରସିଦ୍ଧ ଯୋଦ୍ଧା। ତାର ସମକକ୍ଷ ଯୋଦ୍ଧା ସେ ସମୟରେ କେହି ନଥିଲେ। ତେଣୁ ସମସ୍ତଙ୍କର ତାକୁ ଡର। ତା କଥା ଭୟରେ ସମସ୍ତେ ମାନନ୍ତି।

ପଶୁ ପକ୍ଷୀମାନେ ଝଗଡ଼ା ନକରି ଶାନ୍ତିରେ ରହନ୍ତୁ, ଏହା ବରଖାନର ଇଚ୍ଛା। ସେଥିପାଇଁ ଜଙ୍ଗଲରେ ଥିବା ସବୁ ପଶୁ ପକ୍ଷୀଙ୍କୁ ସେ ଡକାଇ ସଭାଟିଏ କଲା। ସେଥିରେ ସଭାର ଉଦ୍ଦେଶ୍ୟ ସେ ସମସ୍ତଙ୍କୁ ବୁଝାଇ ଦେଲା। ସମସ୍ତେ ତା କଥାରେ ଖାଲି ରାଜି ହେଲେ ନାହିଁ, ତାର ଏ ଉଦ୍ୟମକୁ ଖୁବ୍ ପ୍ରଶଂସା କଲେ।

ଋଷିଆର ଶାସନ କର୍ତ୍ତାଙ୍କୁ ଜାର୍ କୁହାଯାଏ। ସେ ତାଙ୍କ ମନ ଇଚ୍ଛା ଶାସନ କରନ୍ତି ନାହିଁ। ତାଙ୍କର ଗୋଟିଏ ପରିଷଦ ଅଛି। ସେଇ ପରିଷଦ ସବୁ ବିଷୟରେ ବିଚାର କରି ପରାମର୍ଶ ଦିଏ। ସେଇ ପରାମର୍ଶ ଅନୁସାରେ ଶାସନ ଚାଲୁଥିବାରୁ ଲୋକମାନେ ସୁଖ ଶାନ୍ତିରେ ଅଛନ୍ତି। କଳିତକରାଳରେ ବ୍ୟସ୍ତ ହେଉ ନାହାନ୍ତି। ଏକଥା ପଶୁମାନଙ୍କୁ ଅଛପା ନାହିଁ। ତେଣୁ ପଶୁମାନେ ଜାରଙ୍କ ଶାସନ ଭଳି ଶାସିତ ହେବେ ବୋଲି ସ୍ଥିର କଲେ। ତାପରେ ପ୍ରଶ୍ନ ଉଠିଲା କିଏ ଜାର୍ ହେବ। ଜାର୍ ବାଛି ସାରିଲା ପରେ ପରିଷଦ ବାଛିବା କଥା ଉଠିବ।

କାହାକୁ ଜାର୍ କରାଯିବ, ସେ ବିଷୟରେ ବହୁ ଆଲୋଚନା ଯୁକ୍ତିତର୍କ ଚାଲିଲା। ଜଣେ ବୁଦ୍ଧିମାନ, ବିଚାରଶୀଳ ଓ ବିଜ୍ଞ ବ୍ୟକ୍ତି ଯେ ଜାର୍ ପାଇଁ ଦରକାର, ଏଥିରେ ଦ୍ୱିମତ ନଥିଲା। ତେଣୁ ପଶୁ ଓ ପକ୍ଷୀମାନଙ୍କ ମଧ୍ୟରୁ ସେଇପରି ଜଣକୁ ବାଛିବାକୁ ସ୍ଥିର ହେଲା। ସମସ୍ତେ ଭାବି ଭାବି କହିଲେ

ପଶୁପକ୍ଷୀମାନଙ୍କ ମଧ୍ୟରେ ପେଚା ବିଜ୍ଞ । ବୁଦ୍ଧିବାନ । ତେଣୁ ସେ ହିଁ ଜାର ହେବାକୁ ଏକାନ୍ତ ଉପଯୁକ୍ତ । କିନ୍ତୁ ଏଇ ପ୍ରସଙ୍ଗରେ ପ୍ରତିବାଦ ବି ଆସିଲା । ପେଚାର ଆଖି ଖୁବ୍ ବଡ଼ । ଦିନର ଆଲୋକରେ ସେ ଜଳକା ହୋଇଯାଏ । କିଛି ଦେଖିପାରେ ନାହିଁ । ତେଣୁ ଏପରି ଦିନକଣାକୁ ଜାର କରିବା ସମ୍ଭବ ନୁହେଁ ବୋଲି ତାର ନାଁ କାଟିଦିଆଗଲା ।

ମୂଷା ନାଁ ଉଠିବାପୂର୍ବରୁ ମୂଷା କହିଲା- "ମୁଁ ଗଧିଆକୁ ଡରେ । ତାକୁ ଲୁଚେ । ସେ କିନ୍ତୁ ମୋତେ ଡରେ ନାହିଁ କି ଲୁଚେ ନାହିଁ । ତେଣୁ ଗଧିଆ ସାହାସୀ । ତାକୁ ଜାର କରାଯାଉ ।" ସଭାରେ ମୂଷାର ପ୍ରସ୍ତାବକୁ କେହି କାନ ଦେଲେନାହିଁ ।

ପଶୁମାନଙ୍କ ମଧ୍ୟରେ ଭାଲୁ ଗୋଟିଏ ବଳୁଆ ପଶୁ ବୋଲି ଖ୍ୟାତି ଅଛି । ଅନେକ ତା ନାଁ ଉଠାଇଲେ । କେହି ତା ବିରୁଦ୍ଧରେ ପଦେ ବି କହିଲେ ନାହିଁ । ତେଣୁ ତାର ଜାର ହେବାର କଥା । ଭାଲୁ କହିଲା- "ବଂଧୁଗଣ । ମୁଁ ଭାରି ପେଟୁ । ଖାଦ୍ୟ ଅନ୍ବେଷଣରେ ମୁଁ ସବୁବେଳେ ବ୍ୟସ୍ତ । ଏମିତିକି ଆଜି ଖାଦ୍ୟ ଖାଇବାନେଇ ଏ ସଭାରେ ପହଞ୍ଚିବାରେ ମୋର ଡେରି ହୋଇଗଲା । ଏ ପରିସ୍ଥିତିରେ ମୁଁ କିପରି ଜାର ହେବି ?"

ଭାଲୁର ଏକଥା ଶୁଣି ସବୁ ପଶୁ ରାଗିଗଲେ । ସେମାନେ ଏକ ସ୍ୱରରେ ପଚାରିଲେ- "ଏଇନେ ଆସିଲ ? ପୁଣି ଆମ କଥା ରଖୁନାହଁ ? ସେଥିପାଇଁ ଆମେ ତମକୁ ଛାଡ଼ିବୁ ନାହିଁ । ଦଣ୍ଡଦେବୁ । ଆମର ଅଭିଶାପ ହେଉଛି- ତୁମେ ଛ ମାସ ଶୋଇବ । ଏହି ଛ ମାସ ଭିତରେ ଦିବାଲୋକ ବି ଦେଖିବ ନାହିଁ ।"

ଏ ପ୍ରକାର ନିଷ୍ପତ୍ତି ଶୁଣି ଭାଲୁ ତାଜୁବ । ସେ ଭାବିଲା- ଏଥିପାଇଁ ସେ ନିଜେ ଦାୟୀ । ନିଜର ତ୍ରୁଟି, ଦୋଷ ଓ ଦୁର୍ବଳତା ବାହାରେ ସେ ପ୍ରକାଶ କରିଛି । ସେଥିପାଇଁ ନିଜେ ବିପଦକୁ ଡାକି ଆଣିଛି । ସେଥିରୁ ରକ୍ଷାର ଉପାୟ ନାହିଁ । କାହାକୁ ଦୋଷ ଦେଇ ଲାଭ ନାହିଁ ।

ମୟୂର ଅତି ଗମ୍ଭୀର । ଚୁପ୍‌ଚାପ୍ । କାହାକୁ କିଛି କହେ ନାହିଁ । ତାର ଦୋଷ ଦୁର୍ବଳତା ବିଷୟ ସମସ୍ତଙ୍କୁ ଅଜଣା । ତେଣୁ ତାକୁ ଜାର କରିବାକୁ ଯେତେବେଳେ ପ୍ରସ୍ତାବ ଆସିଲା, କେହି ପ୍ରତିବାଦ କଲେ ନାହିଁ । ସର୍ବସମ୍ମତି କ୍ରମେ ମୟୂର ପଶୁପକ୍ଷୀଙ୍କର ଜାର ହେଲା ।



# ମୂଷା ଓ ବଲ୍‌ଗା ହରିଣ

(ଖାଣ୍ଟି ରୂପକଥା)

ଜଙ୍ଗଲ ପାଖରେ ଗୋଟିଏ ଘାସ ପଡ଼ିଆ । ମୂଷାଟିଏ ସେଠି ଟିକିଏ ଟିକିଏ ଘାସ କାମୁଡ଼ି କାମୁଡ଼ି ଖାଉଥିଲା । କେଜାଣି କେଉଁଠି ଥିଲା ପାଣି ପବନ ମାଡ଼ି ଆସିଲା । ବର୍ଷାରେ ମୂଷାଟି ଜୁଡୁବୁଡୁ ହୋଇ ଓଦା ହୋଇଗଲା । ବର୍ଷା ଭିତରେ ସେ କୁଆଡ଼େ ଯିବ ଜାଣି ପାରିଲା ନାହିଁ । ପାଖରେ ଗହଳିଆ ଘାସ ଦେଖି ସେଥିରେ ଆଶ୍ରୟ ନେଲା । ଏତିକିବେଳେ ଏକ ବିରାଟକାୟ ବଲ୍‌ଗା ହରିଣଟିଏ ଜଙ୍ଗଲରୁ ବାହାରି ଆସିଲା । ତାକୁ ଭାରି ଭୋକ । ସେଥିପାଇଁ ଯାହା ଯେଉଁଠୁ ପାଉଥିଲା ତାକୁ ପାଟିରେ ପୂରାଇ ଗିଳି ଦେଉଥିଲା । ଏଠୁ ସେଠୁ ପୁଳାଏ ପୁଳାଏ ଘାସ ଖାଇବା ଭିତରେ ଯେଉଁ ଘାସ ଭିତରେ ମୂଷା ଥିଲା, ତାକୁ ବି ପାଟିରେ ପୂରାଇ ଗିଳି ପକାଇଲା । ତା ଭିତରେ ଥିବା ମୂଷାଟି କଣ ହେଉଛି ଜାଣି ପାରିଲା ନାହିଁ । ଘାସ ସହିତ ମୂଷାକୁ ଗିଳିବାବେଳେ, ମୂଷାଟି ହତଜ୍ଞାନ ହୋଇଗଲା । ଯେତେବେଳେ ତା'ର ଚେତା ଆସିଲା, ସେ ଦେଖିଲା, ସେ ଯାଇ ବଲ୍‌ଗାର ପେଟ ଭିତରେ ପହଞ୍ଚି ଯାଇଛି ।

ସେ ପ୍ରକୃତିସ୍ଥ ହେଲାପରେ, ସେ କିପରି ପଦାକୁ ଆସିବ, ସେ ବିଷୟରେ ପ୍ରଥମେ ଚିନ୍ତା କଲା । ତାପରେ ସେ ବଲ୍‌ଗାକୁ ଚିତ୍କାର କରି କହିଲା- "ମୁଁ ଛୁରି ପକାଇ ତୋ ପେଟ କାଟି ପଦାକୁ ଆସିବି ।"

ବଲ୍‌ଗା ସିନା କାୟରେ ବିରାଟ। ତାର ବୁଦ୍ଧି କମ୍। ଡରକୁରା ସେ। ମୂଷାର କଥା ଶୁଣି ସେ ଡରିଗଲା। ସେ କହିଲା- "ତୋର ମୋ ପେଟ କାଟିବା ଦରକାର ନାହିଁ। ତୁ ମୋ ପାଟିବାଟେ ପଦାକୁ ଚାଲିଆ।"

ମୂଷା ସିନା କ୍ଷୁଦ୍ର ଜୀବ। ତାର ସାହସ ବହୁତ। ବଲ୍‌ଗାକୁ ସେ ଡରେ ନାହିଁ। ତେଣୁ ସେ କହିଲା- "ତୋ ପାଟି ଲାଳରେ ପୂର୍ଣ୍ଣ। ତେଣୁ ମୁଁ ସେ ବାଟେ ଯାଇ ପାରିବି ନାହିଁ।"

ପୁଣି ମୂଷା କହିଲା- "ମୁଁ ଛୁରିଟିଏ ଧାର କରି ତୋ ପେଟ କାଟି ପଦାକୁ ଆସିବି।"

ବଲ୍‌ଗା ଭୟରେ ଛାନିଆ। ସେ ଅନୁନୟ କରି କହିଲା- "ମୋ ପେଟ କାଟିବା ଦରକାର ନାହିଁ। ତୁ ନାକବାଟେ ଚାଲି ଆ।"

କଥାଟା ମୂଷା ମନକୁ ପାଇଲା ନାହିଁ। ସେ ଉତ୍ତର ଦେଲା- "ତୋ ନାକ ସିଂଘାଣିରେ ପୂର୍ଣ୍ଣ। ମୁଁ ସେ ବାଟେ ଯାଇ ପାରିବି ନାହିଁ।"

ପୁଣି ବଡ଼ ପାଟିରେ ମୂଷା କହିଲା- "ମୁଁ ଛୁରି ଧାର କରି ତୋ ପେଟ କାଟି ପଦାକୁ ଆସିବି।"

ବଲ୍‌ଗା ମୂଷା କଥାରେ ଥରହର। ସେ କହିଲା- "ମୋ ପେଟ କାଟିବାର ଆବଶ୍ୟକତା ନାହିଁ। ତୁ ମୋ କାନ ବାଟେ ଚାଲିଆ।"

ଏହା ଶୁଣି ମୂଷା କହିଲା- "ତୋ କାନ ଗଇରେ ପୂର୍ଣ୍ଣ। ସେ ବାଟେ ମୁଁ ଯାଇ ପାରିବି ନାହିଁ।"

ପୁଣି ମୂଷା ଖୁବ୍ ଜୋରରେ ଗର୍ଜନ କଲା- "ମୁଁ ଛୁରି ଧାର କରିବି। ତୋ ପେଟ କାଟି ପଦାକୁ ଆସିବି।"

ବଲ୍‌ଗା କ'ଣ କରିବ ଆଉ କେଉଁବାଟେ ମୂଷାକୁ ପଦାକୁ ଆସିବାକୁ କହିବ ଜାଣି ପାରିଲା ନାହିଁ। ସେ ଆଉ ଉତ୍ତର ଦେଲା ନାହିଁ।

ମୂଷା ଦେଖିଲା- ବଲ୍‌ଗା ଖୁବ୍ ଡରି ଯାଇଛି। ପ୍ରତିବାଦ କରିବାକୁ ତାର ଶକ୍ତି ନାହିଁ। ସେ ଏଇ ମଉକାର ସୁବିଧା ନେଲା। ଯା କହୁଥିଲା

ସେଇଆ କଲା । ପଦାକୁ ଚାଲି ଆସିଲା । ସେତେବେଳକୁ ବଲ୍‌ଗା ମୃତ । ମୂଷାଟି ବଲ୍‌ଗାକୁ ଅନାଇଲା । ଏତେ ବଡ଼ ଜୀବ । କିନ୍ତୁ ସାହସ ଓ ବୁଦ୍ଧିହୀନ । ସେଥିପାଇଁ ତା ଭଳିଆ କ୍ଷୁଦ୍ର ଜୀବ ପାଖରେ ଆତ୍ମ ସମର୍ପଣ କରିଦେଲା । ବିନା ପ୍ରତିବାଦରେ ମୃତ୍ୟୁ ବରଣ କଲା । ତାପରେ ମୂଷା ବଲ୍‌ଗାର ଛାଲ ଉତାରିଲା । ସାତ ଅମାର ଓ ସାତ କୋଠି ତା ମାଂସରେ ପୂର୍ଣ୍ଣ କରିଦେଲା ।

ମୋତେ ସେଥିରୁ କିଛି ମିଳିଲା । ତମକୁ ମଧ୍ୟ କିଛି ମିଳିଥିବ ।



## ହରିଣ ଓ ମୂଷା

(ନେନେଟ୍‌ସ ରୂପକଥା)

ଦିନେ ମୂଷାଟିର କାମ କିଛି ନଥିଲା । ଗାତରୁ ସେ ବାହାରି ଆସିଲା । କେଉଁଠିକୁ ଯିବ ସେ ଭାବି ପାରିଲା ନାହିଁ । ରାସ୍ତାରେ ଖାଲି ଏପଟ ସେପଟ ହେଲା । ହରିଣଟିଏ ସେଠି ଆସି ପହଞ୍ଚିଗଲା । ଯାହା ହେଉ ହରିଣ ସାଥିରେ ଖୁସି ବାସି ଗପ କରି ସମୟ କିଛି ସେ କଟାଇ ଦେବ । ଏହା ସେ ଭାବିଲା । ସେଥିପାଇଁ ସେ ଭାରି ଖୁସି । ତେଣୁ ସେ ହରିଣକୁ ଅତି ଆଦରରେ ପଚାରିଲା- "ବଂଧୁବର, କେଉଁଠୁ ଆସିଲ । କେଉଁଆଡ଼େ ଯାତ୍ରା ହେଉଛି ?"

ହରିଣଟି ମୁଣ୍ଡ ଟେକି ଅନାଇଲା । ପ୍ରଶ୍ନ କର୍ତ୍ତା ଗୋଟିଏ ମୂଷା । କ୍ଷୁଦ୍ର ଜୀବଟିଏ । ମନକୁ ତାର ପାଇଲା ନାହିଁ । ସେ ବେଖାତିର ଭାବରେ କହିଲା- "ମୁଁ ମୋର ଚାରି ଗୋଡ଼ରେ ଆସିଲି ଓ ଚାରି ଗୋଡ଼ରେ ଯାଉଛି । ତୁ କଣ ଦେଖି ପାରୁ ନାହୁଁ ?"

ମୂଷାଟି କହିଲା- "ଓଃ ତୁ ବି ମୋ ଭଳି କିଛି ନ ଭାବି ନଚିନ୍ତି ଏଠି ପହଞ୍ଚି ଯାଇଛୁ । କେଉଁଠିକୁ ଯିବୁ ତୁ ବି ଜାଣି ନାହୁଁ । ତାହାହେଲେ ଆ, ସାଥୀ ହୋଇ ଯିବା ।"

"ଚାଲ" ହରିଣ କହିଲା ।

ତା'ପରେ ସେମାନେ ସାଥୀ ହୋଇ ବାହାରିଲେ । ହରିଣ ଦୌଡ଼ିବାକୁ ଆରମ୍ଭ କଲା । ମୂଷା ବି ଦୌଡିବାକୁ ଲାଗିଲା । ବେଶି ସମୟ କି କମ୍ ସମୟ କେହି ଜାଣନ୍ତି ନାହିଁ । ସବୁବେଳେ ମୂଷା ପଛରେ । କିଛି ବାଟ ଗଲାପରେ ହରିଣ ମୂଷାକୁ ଦେଖି ପାରେ ନାହିଁ । ଅଟକେ । ମୂଷାର ଚିତ୍କାରରୁ ତାର ଉପସ୍ଥିତି ହରିଣ ଜାଣିପାରେ । ତେଣୁ କହେ- "ସାଥୀ, ତୁ ସେଇଠି । ଏଥର ଆ ।"

ତା'ପରେ ପୁଣି ସେ ଦୌଡ଼େ । ଏମିତି କେତେଥର ଚାଲିଲା । ଶେଷରେ ମୂଷା କହିଲା- "ତୋ ପଛରେ ଦୌଡ଼ି ଦୌଡ଼ି ମୁଁ କ୍ଳାନ୍ତ । ଆଉ ଦୌଡ଼ି ପାରିବି ନାହିଁ । ଏଥର ଟିକିଏ ଆରାମ କରିବା । ସେଥିପାଇଁ ଆ, ଲୁଚକାଳି ଖେଳିବା ।"

ସତେ ଯେମିତି ହରିଣର ମନକଥା ମୂଷା ପ୍ରକାଶ କରିଦେଲା । ସେଇମିତି ହରିଣକୁ ଲାଗିଲା । ସେ କହିଲା- "ଭଲ କଥାଟିଏ କହିଲୁ । ଆ ଖେଳ ଆରମ୍ଭ କରିବା ।"

"ଆମ ଭିତରୁ କିଏ ଲୁଚିବ ?" ମୂଷା ପଚାରିଲା ।

"ତୁ ତ ମୋ ଠାରୁ ଛୋଟ । ତେଣୁ ମୁଁ ଲୁଚିବି ।" ହରିଣ କହିଲା ।

"ଠିକ୍ ଅଛି" ମୂଷା ଉତ୍ତର ଦେଲା ।

"ଏଥର ତୁ ଆଖି ବନ୍ଦ କର" ହରିଣ ମୂଷାକୁ କହିଲା ।

ମୂଷାଟି କହିଲା- "ମୁଁ ଆଖି ବୁଜିଲି । ତୁ ଏଥର ଲୁଚିବାକୁ ଯା ।" ଯଦିଓ ଏକଥା ସେ କହିଲା, ପ୍ରକୃତରେ ସେ ଆଖି ବୁଜିଲା ନାହିଁ । ପାଖରେ ଗୋଟିଏ ମୂଷାଗାତ ଥିଲା । ସେଥିରେ ଯାଇ ସେ ପଶିଲା ।

ହରିଣ ଲୁଚିବା ପାଇଁ ପାଖରେ ରହିଲା ନାହିଁ କି ମୂଷା ଆଖିବନ୍ଦ କଲା କି ନାହିଁ ସେ ବିଷୟରେ ଚିନ୍ତା ବି କଲା ନାହିଁ । ସେ ଖୁବ୍ ଜୋରରେ ଧାଇଁଲା । ବେଶ୍ କିଛି ବାଟ ଧାଇଁଗଲା ପରେ ଗୋଟିଏ ଶୁଖିଲା ଖାଲଟିଏ

ଦେଖି ତା ଭିତରକୁ ଗଲା । ସେଇଠି ଶୋଇ ପଡ଼ିଲା ।

ମୂଷା ଗାତ ଭିତରୁ ବାହାରି ଚାରି ଆଡ଼କୁ ଉଣ୍ଡିଲା । କୌଣସିଠାରେ ଚିହ୍ନବର୍ଣ୍ଣ ପାଇଲା ନାହିଁ । ଉଣ୍ଡି ଉଣ୍ଡି ଶେଷକୁ ସେ ହାଲିଆ ହୋଇଗଲା । ସେ ଦେଖିଲା ଯେ ଯେତେ ପରିଶ୍ରମ କଲେ ବି ସେ ହରିଣକୁ ଖୋଜି ପାଇବ ନାହିଁ । ତେଣୁ ସେ ନିଜେ ନିଜକୁ କହିଲା- ମୁଁ ବୁଦ୍ଧି ପ୍ରୟୋଗ କରିବି । ଅସୁର ଭଳି ହରିଣ ସିନା ହୋଇଛି । ତାକୁ ଟପି ଯିବି । ତାପରେ ସେ ବଡ଼ ପାଟିରେ ଚିତ୍କାର କଲା- "ହେ ହରିଣ, କିପରି ଲୁଚିବାକୁ ହେବ, ଏତିକି କ'ଣ ତୁ ଜାଣିନାହୁଁ । ଏଇତ ତୋର ଶିଙ୍ଗ ଦେଖା ଯାଉଛି । ତୁ କ'ଣ ଲୁଚିଛୁ ?"

ହରିଣ ତାର ଶୋଇଲା ଜାଗାରେ ରହି ଭାବିଲା- ସେ ଯଦି ପ୍ରକୃତରେ ଶିଙ୍ଗକୁ ତାର ଲୁଚାଇ ପାରିଲା ନାହିଁ, ସେ ଲୁଚିଲା କ'ଣ ? ତା'ପରେ ସେ ସେଠି ଆଉ ନଶୋଇ ମୂଷା ପାଖକୁ ଆସିଲା ।

ତାକୁ ଦେଖି ମୂଷା କହିଲା- "ଏଥର ମୋର ଲୁଚିବା ପାଳି, ତୁ ଆଖି ବନ୍ଦ କର ।"

ହରିଣ ଆଖି ବନ୍ଦ କରି ଠିଆହେଲା । ମୂଷା ବେଶି ଦୂରକୁ ଗଲା ନାହିଁ । ହରିଣ ତ ଦଳ ଭିତରେ ଠିଆ ହୋଇଥିଲା । ମୂଷାଟି ଯାଇ ତା ଖୁରା ପାଖ ଦଳ ଭିତରେ ଲୁଚିଗଲା ।

କିଛି କାଳ ପରେ ହରିଣ ଆଖି ଖୋଲିଲା । ଚାରି ଆଡ଼କୁ ବହୁତ ସମୟ ଧରି ଅନାଇଲା । କିନ୍ତୁ ମୂଷାର କିଛି ଟେର ପାଇଲା ନାହିଁ । ସେ ମନେ ମନେ ଖୁବ୍ ବିରକ୍ତ ହେଲା । ସେତେବେଳକୁ ତାକୁ ଭାରି ଭୋକ । ସେ ଭାବିଲା- ମୂଷାକୁ ଅନାଇ ସମୟ ନଷ୍ଟ କରିବା ତାର ଉଚିତ ହେବ ନାହିଁ । ଏଇ ସମୟରେ ଘାସ ଚରିବାଟା ତା ପକ୍ଷେ ଉଚିତ ହେବ । ଗୋଡ଼ ପାଖରେ ଥିବା ଦଳ ଖାଇବାକୁ ଲାଗିଲା । ଖାଉ ଖାଉ ଦଳ ସହିତ ମୂଷାକୁ ବି ଗିଳି ପକାଇଲା । କିଛି ଦଳଖାଇବା ପରେ ଭୋକ ତାର ମରିଗଲା । ସେ ମୂଷାକୁ ଅପେକ୍ଷା କରିବା ପାଇଁ ସେଠି ଶୋଇଗଲା । କିଛି ସମୟ ପରେ ମୂଷାଟିର ଚେତା ଆସିଲା । ସେ ଦେଖିଲା- ସେ ହରିଣ ପେଟରେ ପହଞ୍ଚି ଯାଇଛି ।

ମୂଷାଟି ହରିଣର ପେଟ ଭିତରକୁ କିପରି ଆସିଲା, ସେ ଚିନ୍ତା କଲା। ଶେଷକୁ ପଞ୍ଜରା ହାଡ଼ ମଝିରେ ଥିବା ମାଂସକୁ କାଟି ପଦାକୁ ଆସିଲା। ବିଚରା ହରିଣଟି ସାଙ୍ଗେ ସାଙ୍ଗେ ମରିଗଲା।

ମୂଷାଟି ହରିଣ ମୁହଁକୁ କିଛି ସମୟ ଧରି ଅନାଇଲା। ତାପରେ କହିଲା- "ମୁଁ ଆକାରରେ ଖୁବ୍ କ୍ଷୁଦ୍ର। ତୁ ବେଶ୍ ବଡ଼। ମୋର ବୁଦ୍ଧି ପ୍ରଖର। ତୋର ବୁଦ୍ଧି ନାହିଁ। ସେଥିପାଇଁ ଦେହରେ ତୋର ବେଶି ବଳ ଥାଇବି ତୁ ମୋଠାରୁ ବଳବାନ ନୁହଁ। ମୋର ବୁଦ୍ଧି ଯୋଗୁ ମୁଁ ଜୋରଦାର ବୋଲି ପ୍ରମାଣିତ ହେଲା। ଯାହାହେଉ ତୁ ମୋର ବଂଧୁ। ତୋର ମାଂସ ମୋର ଓ ମୋ ପିଲାଙ୍କୁ ବହୁତ ଖାଦ୍ୟ ଯୋଗାଇବ।" ହରିଣ ମାଂସକୁ ନେବାକୁ ହେଲେ, ତାର ଛାଲ ଉତ୍ତାରିବାକୁ ହେବ। ସେଥିପାଇଁ ଚେଷ୍ଟା କଲା। ହରିଣର ଚମଡ଼ା ଟାଣ। ମୋଟା। ଆଉ ଲୋମପୂର୍ଣ୍ଣ। ତାକୁ କାଟି ଛାଲିବା ପାଇଁ ମୂଷା ଯେ ସଂପୂର୍ଣ୍ଣ ଅସମର୍ଥ ଓ ଅକ୍ଷମ। ବହୁ ଉଦ୍ୟମ ପରେ ମୂଷା ଏହା ଅନୁଭବ କଲା। ମାଂସ ପାଇବାକୁ ହେଲେ ଚମଡ଼ାକୁ ହିଁ ଉତ୍ତାରିବାକୁ ହେବ। ତେଣୁ ସେ ଏଇ କାମ ପାଇଁ ଅନ୍ୟର ସାହାଯ୍ୟ ନେବାକୁ ସ୍ଥିର କଲା। କିଏ ଏଥିପାଇଁ ଉପଯୁକ୍ତ ? ଏଥିପାଇଁ ସେ ବହୁତ ଭାବିଲା। ଶେଷକୁ ସମୁଦ୍ର ଈଗଲର ସାହାଯ୍ୟ ନେବ ବୋଲି ଭାବି ବଡ଼ ପାଟିରେ ଡାକିଲା- "ହେ ସମୁଦ୍ର ଈଗଲ, ମୁଁ ଗୋଟିଏ ହରିଣ ମାରିଛି। ଆ, ତା ଚମଡ଼ା ଉତ୍ତାରିବା। ମାଂସରୁ ଭାଗ ନେବୁ।"

ସମୁଦ୍ର ଈଗଲ ମୂଷାର ଡାକ ଶୁଣି ଆସିଲା। ଚମଡ଼ା ଉତ୍ତାରିବା ପାଇଁ ବହୁ ଚେଷ୍ଟା କଲା। ପାରିଲା ନାହିଁ। ସେଠୁ ସେ ଉଡ଼ି ଚାଲିଗଲା। ଏ କାମ ପାଇଁ ସମୁଦ୍ର ଈଗଲ ଅପାରଗ। ଅସମର୍ଥ। ମୂଷା ଅନୁଭବ କଲା। ସେଥିପାଇଁ ମୂଷା ମନେ ମନେ ସମୁଦ୍ର ଈଗଲ ଉପରେ କ୍ଷୁବ୍ଧ। ତା ପରେ ଏ କାମ ଡାମରା କାଉ କରିପାରିବ ବୋଲି ସେ ଭାବିଲା। ତେଣୁ ସେ ଡାକିଲା- "ଡାମରା କାଉ, ହେ ଡାମରା କାଉ, ମୁଁ ହରିଣଟିଏ ମାରିଛି, ଆ, ତାର ଛାଲ ଉତ୍ତାରି ଦେ। ତୋତେ ମୁଁ ମାଂସରୁ ଭାଗ ଦେବି।"

ମୂଷାର ଡାକ ଶୁଣି ଡାମରା କାଉଟି ଆସିଲା । ସେ ବି ହରିଣର ଛାଲ ଉତ୍ତାରିବାକୁ ଚେଷ୍ଟା କଲା । ସବୁ ଚେଷ୍ଟା ତା'ର ବ୍ୟର୍ଥ । ଡାମରା କାଉ ତ ଅଚାଲାକି ନୁହଁ । ଛାଲ ସିନା ସେ ଉତ୍ତାରି ପାରିଲା ନାହିଁ, ହେଲେ ଖୁମ୍ପା ଖୁମ୍ପି କରି ହରିଣର ଆଖି ଦୁଇଟି ଖାଇଦେଲା । ତାପରେ ସେ ଉଡ଼ି ଚାଲିଗଲା ।

ମୂଷାଟି ଏବେ ହତାଶ । ସେ ଭାବିଲା- କିଏ ତା ପାଇଁ ଛାଲ ଉତ୍ତାରିବ ? ମାଂସ ସାଇତି ରଖିବାର ସବୁ ଆଶା ତାର କଣ ପାଣି ଫୋଟକା ଭଳି ମିଳାଇଯିବ ? ସେ ଭଗବାନକୁ ସାହାଯ୍ୟ ପାଇଁ ପ୍ରାର୍ଥନା କଲା ।

ଏତିକିବେଳେ ସେ ଦେଖିଲା ଯେ ଗୋଟିଏ ଗଧିଆ ଆଉ କୋକିଶିଆଳୀ ତା ଆଡ଼କୁ ଆସୁଛନ୍ତି । ସେମାନେ ମୃତ ହରିଣକୁ ଦେଖି ସ୍ତମ୍ଭୀଭୂତ ହୋଇଗଲେ ।

କୋକିଶିଆଳୀକୁ ମୂଷାଟି କହିଲା- "ଏ ହରିଣଟିକୁ ମୁଁ ମାରିଛି । ତାର ଛାଲ ଉତ୍ତାରିବାକୁ ମୁଁ ସାଥୀ ଖୋଜୁଛି ।"

କୋକିଶିଆଳୀ କହିଲା- "ଯାହା ହେଉ ତୋର ସୁବିଧା ହେଇଗଲା । ଯାହା ଦେଖାଯାଉଛି, ହରିଣଟି ମାଂସାଳୀ । କିନ୍ତୁ ଛାଲ ଉତ୍ତାରିବାକୁ ଚେଷ୍ଟା କରି କରି ତୁ ହାଲିଆ ହୋଇ ଯାଇଛୁ । ତୁ ଟିକିଏ ବିଶ୍ରାମ କର । ମୁଁ ଓ ଗଧିଆ ଚମଡ଼ା ଉତ୍ତାରିବାରେ ଲାଗି ପଡ଼ିବୁ । ଛାଲ ଉତ୍ତରା ସାରିଲେ ତୋତେ ଉଠେଇବୁ ।"

କୋକିଶିଆଳୀର କଥାରେ ଥିଲା ନମ୍ରତା, ଭଦ୍ରାମୀ, ସ୍ନେହ ଓ ଶ୍ରଦ୍ଧା । ସେ ଯେ ଏକ ଚାଲ୍, ମୂଷା ତା' କେଉଁଠୁ ବୁଝିବ ? ସେ ସେମାନଙ୍କୁ ବିଶ୍ୱାସ କଲା । ଶୋଇବାକୁ ଚାଲିଗଲା । ତା'ର ଆଗ ଗୋଡ଼ ପାପୁଲି ଉପରେ ମୁଣ୍ଡ ଦେଇ ନିଘୋଡ଼ ନିଦରେ ଶୋଇ ପଡ଼ିଲା । କେତେ ସମୟ ସେ ଶୋଇଛି, ସେ ବି ଜାଣେ ନାହିଁ । କୋକିଶିଆଳୀ ଉଠାଇବାରେ ସେ ଉଠିଲା । ତାକୁ

କୋକିଶିଆଳୀ କହିଲା- "ମୂଷା ଉଠୁ, ଉଠୁ। ହରିଣର ଚମଡ଼ା ଉତ୍ତରା ସରିଛି। ଯା, ମାଂସ ଖାଇବୁ।"

ମୂଷାଟି ଉଠିପଡ଼ି ଡେଇଁ ପଡ଼ିଲା। ହରିଣ ପଡ଼ିଥିବା ଜାଗା ପାଖକୁ ଧାଇଁଲା। ଆଶ୍ଚର୍ଯ୍ୟ। ସେଠି ମୃତ ହରିଣ ନାହିଁ କି ତା'ର ମାଂସ ନାହିଁ। କେବଳ ଖୁରା ଓ ଶିଙ୍ଗ ପଡ଼ିଛି। କୋକିଶିଆଳୀ ଓ ଗଧିଆ ବି ଅଦୃଶ ହୋଇଗଲେଣି।

ଏହା ଦେଖି ମୂଷାଟି ରାଗରେ ନିଆଁ। ଏଥର ସେ କ'ଣ କରିବ ? ବହୁ ସମୟ ପରେ ରାଗ ତା'ର ଶାନ୍ତ ହେଲା। ସେ ଭାବିଲା- ସେ ହରିଣଠାରୁ ଚାଲାକ। ହେଲେ, ଗଧିଆ ଓ କୋକିଶିଆଳୀ ତାଠାରୁ ଅଧିକ ଚାଲାକ।



## କୋକିଶିଆଳୀର ପେଟ କାହିଁକି ଧଳା

### (ନଗନସ୍ୱାନ ରୂପକଥା)

ଡାମରା କାଉ ତା ବସା ପାଖ ଡାଳରେ ବସିଥିଲା। ଥଣ୍ଟରେ ତାର ମାଂସ ଖଣ୍ଡେ। ଏତିକିବେଳେ କୋକିଶିଆଳୀଟିଏ ସେଇ ଗଛ ମୂଳରେ ପହଞ୍ଚିଲା। ଡାମରା କାଉ ଥଣ୍ଟରେ ମାଂସ ଦେଖି ତା ପାଟିରୁ ଲାଳ ବୋହିଲା। ସେ ଟିକିଏ ଚିନ୍ତା କଲା। ତାପରେ ସେ ଡାମରା କାଉକୁ କହିଲା- କଳା ମଚମଚ ହୋଇ ଡାମରା ତୁ କେଡ଼େ ସୁନ୍ଦର ଦେଖାଯାଉଛୁ। ତୁ ତ ଏତେ ସୁନ୍ଦର। ତେଣୁ ତୋ କଣ୍ଠ ଅତି ମଧୁର ହୋଇଥିବ। ତୁ ଭଲ ଗୀତ ଗାଉଥିବୁ। ତୋ ଗୀତ ଶୁଣିବାକୁ ମୋର ଭାରି ଇଚ୍ଛା। ତୁ ଗୋଟିଏ ଗୀତ ଗାଆନ୍ତୁ ନାହିଁ।

ସବୁ ତୋଷାମଦ କଥା ଆକର୍ଷଣୀୟ। ସମସ୍ତଙ୍କୁ ଭଲଲାଗେ। ତମରା କାଉ ତାର ବ୍ୟତିକ୍ରମ ନୁହଁ। ସେ ବି କୋକିଶିଆଳୀକୁ ସନ୍ତୁଷ୍ଟ କରିବାକୁ ଚାହେଁ। ସେଥିପାଇଁ ସେ ଗୀତ ବୋଲିବ ବୋଲି ମନସ୍ଥ କଲା। ତେଣୁ କା' କରିବା ପାଇଁ ସେ ଥଣ୍ଟ ମେଲାକଲା। ଫଳରେ ଥଣ୍ଟରେ ଚାପି ଧରିଥିବା ମାଂସ ଖଣ୍ଡକ ଖସିପଡ଼ିଲା। ଫଳରେ ଥଣ୍ଟରେ ଚାପି ଧରିଥିବା ମାଂସ ଖଣ୍ଡକ ଖସିପଡ଼ିଲା। ତା' ତଳେ ପଡ଼ିବା ପୂର୍ବରୁ କୋକିଶିଆଳୀ ତାକୁ ପାଟିରେ ଧରିନେଇ ଗିଳିଦେଲା।

ଏକଥା ଦେଖି କାଉ ରାଗରେ ନିଆଁ। ସେ କୋକିଶିଆଳୀକୁ ବିଭତ୍ସ ଭାବରେ ଗାଳିଦେଲା। କୋକିଶିଆଳୀ କାଉକୁ ଧମକାଇ କରି କହିଲା- "ଦେଖିଛୁ, ମୁଁ ମାଂସ ଖାଇଲି ବୋଲି ଗାଳି କଣ ଦେଉଛୁ ? ତୋର ଛୁଆଟିଏ ବି ଖାଇବି।"

ଏହା ଶୁଣି କାଉଟି ଆଉରି ରାଗିଯାଇ କହିଲା- "ତୋର ତ ଭାରି ବହପ, ତୁ ଥରେ ମୋତେ ବୋକା କରି ମାଂସ ଖାଇଲୁ ବୋଲି ଭାବିଛୁ ଯେ ମୋତେ ତୁ ସବୁବେଳେ ବୋକା ବନାଇବୁ ? ମୋ ଛୁଆ ଗଛରେ। ତୁ ଗଛ ଚଢ଼ି ପାରିବୁ ନାହିଁ। ତୁ କିପରି ମୋର ଛୁଆ ଖାଇବୁ ବୋଲି ମୋତେ ଧମକାଉଛୁ ?"

"ମୁଁ କାହିଁକି ଗଛରେ ଚଢ଼ିବି ? କୁରାଢ଼ୀରେ ଗଛ ମୂଳକୁ ହାଣି ଦେଲେ ଗଛ ପଡ଼ିଯିବ। ତୁ ମୋତେ ଗୋଟିଏ ଛୁଆ ଖାଇବାକୁ ଦେବାକୁ ଅନିଚ୍ଛୁକ। ମୁଁ ତୋର ସବୁ ଛୁଆକୁ ଏକାବେଳେକେ ଖାଇବି। ଏଇ ଦେଖ, ମୁଁ ଗଛକୁ ହାଣିଲି।" ତାର ଲାଞ୍ଜକୁ ଦେଖାଇ କହିଲା- "ଏଇଟା ଗୋଟେ କୁରାଢ଼ୀ। ମୁଁ ଏହାରି ସାହାଯ୍ୟରେ ଗଛକୁ ହାଣିଲି।" ତା'ପରେ ସେ ଲାଞ୍ଜରେ କାଉ ବସିଥିବା ଗଛକୁ ପିଟିବାକୁ ଲାଗିଲା। ଏହା ଦେଖି କାଉ ଛାନିଆ। କୋକିଶିଆଳୀକୁ ନେହୁରା ହୋଇ କହିଲା- "ତୁ ଆମକୁ ଟିକିଏ ଦୟାକର। ଗଛକୁ ତୁ ହାଣେ ନାହିଁ। ବସା ମୋର ଭାଙ୍ଗିଯିବ। ପିଲାମାନେ

ମୋର ସବୁ ମରିଯିବେ ।"

କୋକିଶିଆଳୀ କହିଲା- "ମୁଁ ଏହା ଗୋଟିଏ ସର୍ତ୍ତରେ ବନ୍ଦ କରିବି । ତାହା ହେଉଛି-ତୁ ଯଦି ଗୋଟିଏ ପିଲା ମୋତେ ଦେବୁଁ । ମୁଁ ଏଠୁ ଚାଲିଯିବି ।"

କାଉର ଆଖିରେ ଲୁହ । ଉପାୟ ନାହିଁ । ଗୋଟିଏ ଛୁଆ ପଛେ ଯାଉ ଅନ୍ୟ ଛୁଆ ବଂଚିରହନ୍ତୁ । ତେଣୁ ଛୁଆଟିଏ ବସାରୁ ଆଣି ତଳେ ପକାଇଦେଲା । ତାକୁ ଖାଇଦେଇ କୋକିଶିଆଳୀ ଚାଲିଗଲା । କିନ୍ତୁ ଡାମରା କାଉଟି ସେଇ ଡାଳରେ ବସି କାନ୍ଦିବାରେ ଲାଗିଲା । ଠିକ୍ ଏତିକିବେଳେ ଆକାଶରେ ଧଳା ଚଢ଼େଇଟିଏ ଉଡ଼ି ଉଡ଼ି ଯାଉଥିଲା । ଡାମରାର କାନ୍ଦ ଦେଖି ତାର ଦୟା ହେଲା । ପାଖକୁ ଆସି ପଚାରିଲା- "ଡାମରା କୁଆ, ତୋର କଣ ହେଲା ? ତୁ କାହିଁକି କାନ୍ଦୁଛୁ ?"

ଡାମରା କାଉଟି କୋକିଶିଆଳୀ କଣ କଲା ଆଉ ସେ କେମିତି ତା'ର ଛୁଆଟିକୁ ତାକୁ ଖାଇବାକୁ ଦେଲା, ସେକଥା ସବୁ କହିଲା । ଏ କଥା ଶୁଣି ଧଳା ଚଢ଼େଇଟି ଆଶ୍ଚର୍ଯ୍ୟ । ବିଚଳିତ ।

ସେ କହିଲା- "ଡାମରା କାଉ, ତୁ ଏତେ ବୋକା ବୋଲି ମୁଁ ଜାଣି ନଥିଲି । ଗଛ ହାଣିବା ପାଇଁ କୁରାଢ଼ୀ ଦରକାର । ଏହା ମଣିଷ ବ୍ୟବହାର କରେ । କୋକିଶିଆଳୀ କୁରାଢ଼ୀ କେଉଁଠୁ ଆଣିବ ? ଯାହାକୁ କୁରାଢ଼ୀ ବୋଲି ସେ କହିଲା, ସେଇଟା ତା'ର ଲାଞ୍ଜ । ଗଛରେ ଯେତେ ତାକୁ ପିଟିଲେ ବି ଗଛର କିଛି ହେବ ନାହିଁ । ସେସବୁ ତତେ ଡରାଇବାକୁ କଲା । ତୁ କାହିଁକି ଡରିଯାଇ ତାକୁ ତୋର ଛୁଆଟି ଦେଲୁ ?"

କିଛି ସମୟ ପରେ କୋକିଶିଆଳୀ ସେଠାକୁ ଆସିଲା । ଛୋଟ ଧଳା ଚଢ଼େଇଟି ଯାହା ସବୁ କହିଥିଲା, ସେସବୁ ଶୁଣିଲା । ଏଥିରେ କୋକିଶିଆଳୀ ଖୁବ୍ ଲାଗିଗଲା । ତା'ପରେ ଛୋଟ ଚଢ଼େଇକୁ ଡାକି କହିଲା- "ତୁ ଅପେକ୍ଷା କର । ତତେ ବି ମୁଁ ପାନେ ଦେବି ।"

ଛୋଟ ଚଡ଼େଇଟି କୋକିଶିଆଳୀ କଥାକୁ ଭୃକ୍ଷେପ କଲା ନାହିଁ। ସେ ଉଡ଼ି ଚାଲିଗଲା।

ଦିନେ କୋକିଶିଆଳୀଟି ଜଙ୍ଗଲରେ ବିଶ୍ରାମ ନେଉଥିଲା। ସେତିକିବେଳେ ଛୋଟ ଚଡ଼େଇଟି ସେଠାକୁ ଉଡ଼ି ଆସିଲା। ଏକୁଟିଆ ସେ। ନିଛାଟିଆ ତାକୁ ଲାଗୁଥିଲା। ତେଣୁ କୋକିଶିଆଳୀ ସାଥୀରେ କିଛି ସମୟ କଟାଇବ ବୋଲି ଭାବିଲା। ସେଥିପାଇଁ ଦୂରରେ ଯାଇ ବସିଲା। କୋକିଶିଆଳୀ ତାକୁ ଦେଖି କହିଲା- "ତୋର ଆସିବା ଦେଖି ମୁଁ ଭାରି ଖୁସି। ମୋ ମୁଣ୍ଡରେ ବହୁତ ଉଙ୍କୁଣୀ। ମୋତେ ଖାଇଯାଉଛନ୍ତି। ତୁ ଟିକିଏ ମୋର ଉପକାର କରନ୍ତୁ ନାହିଁ ? ତୁ ମୋ ମୁଣ୍ଡ ଉପରେ ବସି ଖୁମ୍ପି କରି ସବୁ ଉଙ୍କୁଣୀକୁ ବାହାର କରିଦେଲେ, ମୁଁ ରକ୍ଷା ପାଇଯାନ୍ତି।"

ଚଡ଼େଇଟି ଜାଣେ- କୋକିଶିଆଳୀଟି ଖୁବ୍ ଧୂର୍ତ୍ତ। ଯାହା ସେ କହିଲା, ତା' ପଛରେ ତାର ମତଲବ କ'ଣ ଅଛି, କିଏ ଜାଣେ ? ସେଥିପାଇଁ ଚଡ଼େଇଟି ତାକୁ ବିଶ୍ୱାସ କରିପାରିଲା ନାହିଁ। ତେଣୁ ପାଖକୁ ନଆସି ଏଠୁ ସେଠିକି, ସେଠୁ ଏଠିକୁ ଡେଉଁଥାଏ।

କୋକିଶିଆଳୀ ଦେଖିଲା- ଚଡ଼େଇଟି ତା କଥାକୁ ବିଶ୍ୱାସ କରୁନାହିଁ। ତେଣୁ ତାକୁ ପଟକାଇବାପାଇଁ କୋକିଶିଆଳୀଟି କହିଲା- "ତୁ ତ ଚଳଚଞ୍ଚଳ। ମୋତେ ଭୟ କରିବାର କାରଣ କଣ ଅଛି ? ମୋ ମୁଣ୍ଡ ଉପରେ ବସି ଉଙ୍କୁଣି ଖୁମ୍ପ। ମୋର ଅଂଗ ପ୍ରତ୍ୟେଙ୍ଗ ହଲିଲେ ତୋର ପଳାଇ ଯିବାର ଅସୁବିଧା ବି ହେବ ନାହିଁ।"

କୋକିଶିଆଳୀର କଥା ଉପରେ ଚଡ଼େଇଟି ଗଭୀର ଚିନ୍ତା କଲା। ଭାବିଲା- କୋକିଶିଆଳୀ କଥାରେ କିଛି ସତ୍ୟତା ଅଛି। ତେଣୁ ସେ ତାର ପଛପଟୁ ଆସି ମୁଣ୍ଡ ଉପରେ ବସିଲା। ତାପରେ ତା ଥଣ୍ଟରେ ଉଙ୍କୁଣି ଖୁମ୍ପିବାକୁ ଆରମ୍ଭ କଲା।

ଏ ଅବସ୍ଥାରେ ଚଡ଼େଇକୁ ଧରିବା କାଠିକର ପାଠ। ଏକଥା

କୋକିଶିଆଳୀ ଅନୁଭବ କଲା । ତାପରେ ତାର ଆଗ ଗୋଡ଼ ଲମ୍ବାଇ ଦେଲା । ପାପୁଲିରେ ମୁଣ୍ଡ ରଖିଲା । ତାପରେ ତା'ର ନାକ ଦଣ୍ଡିକୁ ଦେଖାଇ କହିଲା- "ଏଠି ବସ । ତୋତେ ଉଙ୍କୁଣି ଖୁମ୍ପିବାକୁ ବେଶ୍ ସୁବିଧା ହେବ ।"

ଛୋଟ ଚଢ଼େଇର ଆଗ ଭୟ ଆଉ ନାହିଁ । ସାହାସ ତାର ବଢ଼ି ଗଲାଣି । ସେ ବି କୋକିଶିଆଳୀର ଗତିବିଧି ଉପରେ ନଜର ରଖିଛି । ତେଣୁ ସେ କୋକିଶିଆଳୀ କଥା ମାନିଲା । ତାର ନାକ ଦଣ୍ଡା ଉପରେ ବସିଲା ।

କୋକିଶିଆଳୀର ଚଢ଼େଇ ଗତିବିଧି ଉପରେ ତୀକ୍ଷ୍ଣ ନଜର । ତାର ଅସାବଧାନତାର ସୁବିଧା ନେବା ପାଇଁ ସେ ତତ୍ପର । ଯେମିତି ଚଢ଼େଇଟି ଉଙ୍କୁଣି ଖୁମ୍ପିବାରେ ମନ ନିଯୋଗ କଲା, ଠିକ୍ ସେତିକିବେଳେ କୋକିଶିଆଳୀ ତାକୁ ଧରିବା ପାଇଁ ଆଗ ପାଦକୁ ବଢ଼ାଇଦେଲା । ଚଢ଼େଇଟି ଖୁବ୍ ହୁସିଆର । କୋକିଶିଆଳୀଟି ତାକୁ ଧରିବା ପୂର୍ବରୁ ସେ ଉଡ଼ି ଚାଲିଗଲା । କିନ୍ତୁ ଉଡ଼ିଯିବା ପୂର୍ବରୁ ତା'ର ପରଟିଏ କୋକିଶିଆଳୀର ଆଗ ପାଦରେ ରହିଗଲା । କୋକିଶିଆଳୀଟି ସେ ପରକୁ ଫିଙ୍ଗିଦେଲା । କିନ୍ତୁ ତା ତଳେ ନପଡ଼ି ତାର ପେଟରେ ଲାଗିଗଲା । ପରଟି ପେଟକୁ ତାର ଏମିତି ଜାବୁଡ଼ି ଧରିଲା ଯେ ଜମା ଛାଡ଼ିଲା ନାହିଁ । ତା ପେଟ ଧଳା ହୋଇଗଲା ।

ଏହା କେତେ କାଳର କଥା କିଛି କହିହେବ ନାହିଁ । କିନ୍ତୁ କୋକିଶିଆଳୀ ଯେଉଁ ଅବିଶ୍ୱାସ ଧପ୍ପାବାଜି କଲା ତାର ନିଦର୍ଶନ ତା ପେଟରେ ଧଳାଚିହ୍ନ । ଏବେବି ତା ଅଛି ।



# ବଣ କୁକୁଡ଼ା, ରାଜହଂସ ଓ ବତକ

## (କେଟି ରୂପକଥା)

ରୁଷିଆରେ ପ୍ରାୟ ସବୁ ଅଂଚଳରେ ଶୀତଦିନେ ବରଫ ପଡ଼ିଥାଏ। ପକ୍ଷୀମାନେ ପୋକ ଜୋକ, ଦୁବଘାସ, ଫଳ ଓ ଫୁଲ ଖାଇ ବଂଚନ୍ତି। ଶୀତଦିନେ ସବୁ ଜାଗା ତ ବରଫରେ ଆବୃତ। ପକ୍ଷୀମାନଙ୍କର ଖାଦ୍ୟ ମିଳିବ୍ କେଉଁଠୁ ? ତେଣୁ ବରଫ ପଡ଼ିବା ଆଗରୁ ପକ୍ଷୀମାନେ ଦଳ ବାନ୍ଧି ସେ ଜାଗା ସବୁ ଛାଡ଼ି ଦକ୍ଷିଣକୁ ଚାଲି ଆସନ୍ତି। ଶୀତ ଛାଡ଼ି ବରଫ ତରଳିଲେ, ସେମାନେ ପୁଣି ଫେରିଯାଆନ୍ତି।

ରାଜହଂସ, ବତକ ଓ ବଣ କୁକୁଡ଼ା ଭାରି ସାଙ୍ଗ। ଶୀତ ଆଗତ ପ୍ରାୟ। ସବୁ ପକ୍ଷୀମାନେ ଦଳ ବାନ୍ଧି ଦକ୍ଷିଣକୁ ବାହାରିଲେ। ରାଜହଂସ ଓ ବତକ ଦେଖିଲେ ଯେ ବଣ କୁକୁଡ଼ାର ଦକ୍ଷିଣକୁ ଯିବାକୁ ଜମା ମନ ନାହିଁ। ସେମାନେ ସାଥୀ ହୋଇ ବଣ କୁକୁଡ଼ା ପାଖକୁ ଗଲେ। ତାକୁ କହିଲେ- "ହେ ବଣ କୁକୁଡ଼ା, ଶୀତ ମାଡ଼ି ଆସୁଛି। ବରଫ ପଡ଼ିଯିବ। ଖାଇବାକୁ ଆଉ ମିଳିବ ନାହିଁ। ଏଠି ରହିଲେ ଶୀତରେ ଆଉ ଉପାସରେ ମରିଯିବା। ସମସ୍ତେ ଦକ୍ଷିଣକୁ ଯାଉଛନ୍ତି। ଆ, ତାଙ୍କ ସାଥୀରେ ଆମେ ବି ଚାଲିଯିବା।"

ବଣ କୁକୁଡ଼ା କହିଲା- "ପକ୍ଷୀମାନେ ସିନା ପଳାଇବେ, ଲୋକେ ତ ପଳାଇବେ ନାହିଁ। ବରଫ ପଡ଼ିଗଲେ, ସେମାନେ କ'ଣ ଖାଇ ବଂଚିବେ ? ଅନ୍ତତଃ ଆମେ ଥିଲେ, ସେମାନେ ଆମକୁ ଖାଇ ବଂଚିଯିବେ। ନଇଲେ ସେମାନେ ଖାଲି ହଇରାଣ ହେବେ। ସେମାନଙ୍କ ସୁବିଧା ପାଇଁ ମୁଁ ଅନ୍ତତଃ ତୁମମାନଙ୍କ ସାଥୀରେ ଯାଇ ପାରିବି ନାହିଁ।"

ବତକ ଓ ରାଜହଂସ କହିଲେ- "ପକ୍ଷୀମାନେ ସିନା ଚାଲିଯିବେ। ମାଛ ତ ଯିବେନି। ମାଛ ତ ହ୍ରଦରେ ଅଛନ୍ତି। ଶୀତ ହଉ ବା ଖରା ହେଉ,

ସେମାନେ ସେଠାରେ ରହିବେ। ଲୋକେ ତାଙ୍କୁ ଧରି ଖାଇବେ। ତୁ ଚାଲିଗଲେ ଲୋକଙ୍କର କିଛି କ୍ଷତି ହେବ ନାହିଁ।"

ବଣ କୁକୁଡ଼ାଟି କହିଲା- "ଯେତେବେଳେ ବରଫ ପଡ଼ିବ, ନଈ ହ୍ରଦର ପାଣିର ଉପର ଅଂଶ ବି ବରଫ ପାଲଟି ଯିବ। ଏହା କମଳ ଭଳି ପାଣିର ଉପରେ ରହିବ। ଲୋକେ ଏ ସମୟରେ ପାଣି ଭିତରୁ ମାଛ ମାରି ପାରିବେ ନାହିଁ। ମୁଁ ଚାଲିଗଲେ, ସେମାନେ ଆଉ କ'ଣ ଖାଇବେ ? ସେମାନେ ମରିଯିବେ।"

"ଏ ସମୟରେ ଚାରିଆଡେ ତ ବରଫ ହୋଇଯିବ। ତୁ କ'ଣ ଖାଇ ବଂଚିବୁ ?" ରାଜହଂସ ଓ ବତକ ପଚାରିଲେ।

"ମୁଁ ଦେବଦାରୁ ଗଛର ବକଳ ଖାଇ ରହିଯିବି। ତେଣୁ ମୋର ଖାଦ୍ୟ ପାଇଁ ଚିନ୍ତା ନାହିଁ।"

"ବକଳ ଖାଇ ଦିନେ ଦି ଦିନ ଜଣେ କାମ ଚଳାଇ ହେବ। ସବୁଦିନ ବକଳ ଖାଇ ବଂଚିବ ନାହିଁ। ତୁ ଆମର ସାଙ୍ଗ। ତୋତେ ଭଲରେ ବଂଚାଇ ରଖିବା ଆମର କର୍ତ୍ତବ୍ୟ। ତୁ ଯଦି ଆପେ ଆପେ ନ ଆସୁ, ତାହାହେଲେ ଆମେ ତୋତେ ଜବରଦସ୍ତି ଆମ ସ୍ୱାର୍ଥୀରେ ନେଇଯିବୁ।"

ସେମାନେ କଥାରେ ଖାଲି କହିଲେ ନାହିଁ। କୁକୁଡ଼ାର ବେକକୁ ଧରି ଟାଣିକରି ନେବାକୁ ଆରମ୍ଭ କଲେ। ବଣ କୁକୁଡ଼ାର ଯିବାର ତ ଜମା ଇଚ୍ଛା ନଥାଏ। ରହିବାକୁ ତାର ମନ। ସେଥିପାଇଁ ଭିଡ଼ିହୋଇ ରହିବାକୁ ଉଦ୍ୟମ କଲା। ଖାଲି ସେତିକି ନୁହେଁ କାନ୍ଦିଲା ବି। ସେ ଏପରି ଭାବରେ କାନ୍ଦିଲା ଯେ ତାର ଆଖିପାଖ ପର ସବୁ ଲାଲ ପଡ଼ିଗଲା।

ବତକ ଓ ରାଜହଂସ ବିରକ୍ତ ହୋଇ ତାକୁ ଛାଡ଼ିଦେଲେ। ସେମାନେ ଦକ୍ଷିଣକୁ ଉଡ଼ିଗଲେ। ବଣ କୁକୁଡ଼ା ରହିଗଲା। ବଂଧୁମାନଙ୍କ ଉପଦେଶ ନ ମାନି ବହୁ ହଇରାଣ ହେଲା। ବଂଧୁମାନଙ୍କ ଭଲକଥା ନମାନିଲେ ଯେତେ

ବିପଦ ଆସେ ତାହା ଚିରଦିନ ପାଇଁ ମନେରହେ । ଏହା କେଉଁ କାଳର କଥା । କିନ୍ତୁ ସେଦିନ କଥା ଚିହ୍ନ ହୋଇ ସବୁଦିନ ପାଇଁ ରହିଗଲା । ଏବେ ବି ବଣ କୁକୁଡ଼ାର ଆଖିପାଖ ପର ସବୁ ଲାଲ ।



## ଧୂର୍ତ୍ତ ବି ଠକାମିର ଶିକାର ହୁଏ

### (ଇଭେଙ୍କ ରୂପକଥା)

ଦିନେ କୋକିଶିଆଳୀ ନଈରୁ ପାଣି ପିଇଲା ବେଳେ କୂଳ ପଥର ପାଖରେ ଦଣ୍ଡିକିରୀ ମାଛଟିଏ ଶୋଇଥିବାର ଦେଖିଲା । ସେ ପଚାରିଲା- "ଦଣ୍ଡିକିରୀ ତୁ ଶୋଇଛୁ ନା ସେମିତି ପଡ଼ି ରହିଛୁ । ମୁଁ ଶୁଣୁଥିଲି- ତୁ କେଉଁଠି ଭାରି ଅଳସୁଆ । ଧୀରମନ୍ଥର । ଦୌଡ଼ିବାକୁ ଅକ୍ଷମ ।"

କୋକିଶିଆଳୀର କଥା ଦଣ୍ଡିକିରୀକୁ ଭାରି ବାଧିଲା । ସେ ଭାବିଲା- ଏ ଏକ ତାଚ୍ଛଲ୍ୟ । ତାର ଅପାରଗତା ପାଇଁ ଏକ ବିଦ୍ରୁପ । ସେ ରାଗିଗଲା । କୋକିଶିଆଳୀକୁ ଜବାବ ଦେଲା- "ତୁ ସ୍ଥଳଚର । ମୋର ଦୌଡ଼ ବିଷୟରେ ସଂପୂର୍ଣ୍ଣ ଅଜ୍ଞ । ତୋର ଅଜ୍ଞତା ପ୍ରଚାର କରି ବାହାଦୂରୀ ନେବା ଉଚିତ ହେବ ନାହିଁ । ଦୌଡ଼ରେ ମୋ ସମକକ୍ଷ କେହି ନାହାନ୍ତି । ତୋ ପ୍ରଶ୍ନ ଉଠୁଛି କେଉଁଠି ?"

କୋକିଶିଆଳୀ ଦଣ୍ଡିକିରୀର ଧୃଷ୍ଟତା ପାଇଁ ଅଟ୍ଟହାସ୍ୟ କରି କହିଲା- "ତୁ ଯଦି ଏପରି ପାରଙ୍ଗମ, ତୋର ମୋର ପରଖା ପରଖି ହୋଇଯିବା । ଏଥିରେ ତୋର ଆପତ୍ତି କଣ ?"

ଦଣ୍ଡିକିରୀ ଜବାବ ଦେଲା- "ଏହା ଏକ ପ୍ରଶଂସନୀୟ ପ୍ରସ୍ତାବ । କିନ୍ତୁ ମୁଁ ତ ପାଣିରେ ଦୌଡ଼ିବି, ତୁ ତ ଉପରେ ଦୋଡ଼ିବୁ । ପରଖା ପରଖି କିପରି ହେବ ? ମୁଁ ଆଗରେ ଯାଉଛି ନା ପଛରେ ପଡ଼ିଲି, ତୁ ଜାଣିବୁ କେମିତି ?"

କୋକିଶିଆଳୀ କହିଲା- "ଏ ତ ଜମା ସମସ୍ୟା ନୁହଁ। ନଈର ଉପର ମୁଣ୍ଡକୁ ଦୌଡ଼ ହେବ। ତୁ ପାଣିରେ ପହଁରି ଯିବୁ। ମୁଁ କୂଳରେ ଦୌଡ଼ିବି। ନଈବାଙ୍କ ଯେଉଁଠି ପଡ଼ିବ, ମୁଁ ପଚାରିବି, ଦଣ୍ଡିକିରୀ ତୁ କେଉଁଠି ? ତୁ ଯଦି ଉତ୍ତର ନଦେଲୁ, ତୁ ହାରିଗଲୁ। ଯଦି ଉତ୍ତର ଦେବୁ, ମୁଁ ଆଗକୁ ଦୌଡ଼ିବି, ନଈ ଯେଉଁଠୁ ବାହାରିଛି, ଯେ ଆଗ ପହଞ୍ଚିବ ସେ ଅପେକ୍ଷା କରିବ। ଅନ୍ୟଟି ପହଞ୍ଚିଲେ ତାର ଜିତାପଟଟା ସ୍ୱୀକୃତ ହେବ।"

ଦଣ୍ଡିକିରୀ କୋକିଶିଆଳୀର ପ୍ରସ୍ତାବରେ ରାଜି। ଉଭୟପକ୍ଷ ଆଲୋଚନା ପରେ ସିଦ୍ଧାନ୍ତ କଲେ-ପରଦିନ ସକାଳୁ ସେହିଠାରୁ ଦୌଡ଼ ଆରମ୍ଭ ହୋଇ ନଈ ଉତ୍ପତ୍ତି ସ୍ଥାନ ପର୍ଯ୍ୟନ୍ତ ଚାଲିବ।

କଥାଟା ସ୍ଥିର ହେଲା ପରେ କୋକିଶିଆଳୀ ଚାଲିଗଲା। ଦଣ୍ଡିକିରୀ ମାଛ ସେଠି ପଡ଼ି ରହିଲା। କଣ କଲେ, କୋକିଶିଆଳୀକୁ ଠକିହେବ ଆଉ ଦୌଡ଼ରେ ଜିତିବ, ସେଇଟା ତାର ଚିନ୍ତା। ବହୁ ସମୟ ଭାବିଲା ପରେ ସେ ତା ଜାତିର ସବୁ ମାଛକୁ ଡକାଇଲା। ସମସ୍ତେ ରୁଣ୍ଡ ହେଲା ପରେ ସେ କହିଲା- "ମୁଁ କୋକିଶିଆଳୀ ସାଥିରେ ଦୌଡ଼ି ଜିତିବି ବୋଲି ବାଜି ମାରିଛି। ମୁଁ ନୁହେଁ ସମଗ୍ର ଦଣ୍ଡିକିରୀମାଛ ଜାତିର ଇଜତ ଏଥିରେ ଜଡ଼ିତ। ତୁମ୍ଭେମାନେ ମୋତେ ସାହାଯ୍ୟ କରିବ ବୋଲି ଜବାବ ଦେଲେ, ଯାହା କରିବାକୁ ହେବ, ତାହା ତମମାନଙ୍କୁ କହିବି।"

ସମସ୍ତେ ସାହାଯ୍ୟ କରିବେ ବୋଲି ସମ୍ପୂର୍ଣ୍ଣ ଜବାବ ଦେଲେ। ତାପରେ ଦଣ୍ଡିକିରୀ ମାଛଟି ସମବେତ ତାର ଭାଇମାନଙ୍କୁ କହିଲା- "ଏ ଯେଉଁ ଦୌଡ଼ ହେବ, ଯଦିଓ ଏହା ମୋ ଓ ନିର୍ଦ୍ଦିଷ୍ଟ କୋକିଶିଆଳୀ ଭିତରେ ସୀମାବଦ୍ଧ। ପ୍ରକୃତରେ ଦେଖିବାକୁ ଗଲେ ଏଥିରେ ସମସ୍ତ ଦଣ୍ଡିକିରୀ ମାଛର ପ୍ରତିନିଧିତ୍ୱ କରୁଛି, ଠିକ୍ ସେଇପରି କୋକିଶିଆଳୀ ତାର ଜାତିର ପ୍ରତିନିଧିତ୍ୱ କରୁଛି।"

ଦଣ୍ଡିକିରୀ ମାଛଟି ତାର କଥାଟାକୁ ତାର ଜାତିର କଥା ବୋଲି ଏପରି ଚିତ୍ରିତ କରିଦେଲା ଯେ ସବୁ ଦଣ୍ଡିକିରୀ ମାଛ ଏହାକୁ ତାର ବ୍ୟକ୍ତିଗତ କଥା

ବୋଲି ଭାବିଲେ ନାହିଁ। ସବୁ ଦଣ୍ଡିକିରୀ ମାଛମାନଙ୍କର ଏବେ ଏଇ ଦୌଡ଼ରେ ସଂପୃକ୍ତ ବୋଲ ବିଚାର କଲେ। ଏଥିପାଇଁ ସେମାନେ ସମସ୍ତ ସ୍ୱାର୍ଥ ତ୍ୟାଗ ପାଇଁ ଦୃଢ଼ ପ୍ରତିଜ୍ଞ। ତାପରେ ଉପସ୍ଥିତ ଦଣ୍ଡିକିରୀମାନେ ପ୍ରଶ୍ନ କଲେ- "ଏ ଦୌଡ଼ରେ ତ ତୁମେ ଏକ ମାତ୍ର ଅଂଶ ନେବାରକଥା। ଅନ୍ୟ ଦଣ୍ଡିକିରୀ ମାଛ ଏଥିରେ ତମକୁ କିପରି ସାହାଯ୍ୟ କରିପାରିବେ ? ତେଣୁ ଉତ୍ସାହ ଦେବା ଛଡ଼ା ଆଉ କୌଣସି କାମ କରିବା ସେମାନଙ୍କ ପକ୍ଷରେ ସମ୍ଭବପର ନୁହଁ।"

ଦଣ୍ଡିକିରୀ ମାଛଟି କହିଲା- "ଆମର ଯେଉଁ ଦୌଡ଼ ହେବ, କୋକିଶିଆଳୀ ସ୍ଥଳରେ ଦୌଡ଼ି ଦୌଡ଼ି ଯିବ। ମୁଁ ପାଣି ଭିତରେ ପହଁରି କରି ବା ବୁଡ଼ିକରି ଯିବି। ସମସ୍ତେ ଯଦିଓ ତାକୁ ଦେଖି ପାରିବେ ମୋତେ ତ କେହି ଦେଖି ପାରିବେ ନାହିଁ। ତେଣୁ ମୁଁ ଯାଉଛି କି ନାହିଁ, ତା ଜାଣିବା ପାଇଁ ପ୍ରତି ନଈ ବାଙ୍କରେ କୋକିଶିଆଳୀ ପଚାରିବ- ଦଣ୍ଡିକିରୀ ତୁ କେଉଁଠି ? ଉତ୍ତର ଯଦି ନ ମିଳିଲା, ତାହାହେଲେ ମୁଁ ଦୌଡ଼ରେ ହାରିଗଲି। ଯଦି ମୁଁ କହିଲିଯେ ମୁଁ ଏଇଠି ତାହାହେଲେ ଦୌଡ଼ରେ ଆମେ ପାଖାପାଖି ଅଛୁ, ତେଣୁ, କୋକିଶିଆଳୀ ଆଗକୁ ଦୌଡ଼ିବ। ଆପଣମାନେ ଯଦି ଏଇ ଦଣ୍ଡିକିରୀ ମାଛ ଜାତିର ସମ୍ମାନ ମହତ୍ତ୍ୱ ବଜାୟ୍ ରଖିବାକୁ ଚାହାନ୍ତି, କାଲି ସକାଳ ସୁଦ୍ଧା ସବୁ ଦଣ୍ଡିକିରୀ ମାଛ ନଈ ଯାକ ଖେଦି ଯାଆନ୍ତୁ। ପ୍ରତି ବାଙ୍କରେ ଜଣେ ଜଣେ ଅପେକ୍ଷା କରି ରହିବେ। ଯେତେବେଳେ କୋକିଶିଆଳୀ ଦୌଡ଼ି ଦୌଡ଼ି ଯାଇ ସେଠି ପଚାରିବ ଯେ ଦଣ୍ଡିକିରୀ ତୁ କେଉଁଠି, ଯେ ସେଠି ଥିବ, ସେ ସାଥି ସାଥି ଜବାବ ଦେବ ଯେ 'ମୁଁ ଏଇଠି'। କୋକିଶିଆଳୀ ତ ପାଣି ପାଖକୁ ଆସି ତାକୁ ତ ଦେଖିବ ନାହିଁ, ତେଣୁ ଯେ ଜବାବ ଦେବ ତାର କିଛି ଅସୁବିଧା ହେବ ନାହିଁ। ବରଂ କୋକିଶିଆଳୀ ମୋର ଉପସ୍ଥିତି ଅନୁଭବ କରିବ। ପୁଣି ଆଗକୁ ଦୌଡ଼ିବ। ଏକଥାଟାରେ ଉଲମ୍ ବିଲମ୍ କିଛି ନଥିଲା। କଥାଟା ସମସ୍ତଙ୍କ ମନକୁ ପାଇଲା। ସମସ୍ତେ ଦଣ୍ଡିକିରୀ ମାଛକୁ ସାହାଯ୍ୟ କରିବାକୁ

ରାଜି ହୋଇଗଲେ । ନଈର ବିଭିନ୍ନ ବାଙ୍କରେ କିଏ କିଏ ରହିବେ ତାହା ମଧ୍ୟ ସେଇ ସଭାରେ ସ୍ଥିର ହୋଇଗଲେ । ସେଇ ଅନୁସାରେ ରାତି ପାଇବା ପୂର୍ବରୁ ସେମାନେ ତାଙ୍କ ଜାଗାରେ ପହଞ୍ଚିଗଲେ ।

ପରଦିନ ଠିକ୍ ସମୟରେ ଦଣ୍ଡିକିରୀ ଓ କୋକିଶିଆଳୀର ଭେଟ ହେଲା । ଦୌଡ଼ ଆରମ୍ଭ ହେବା ପୂର୍ବରୁ ଉଭୟେ ଗୋଟିଏ କିଳିକ୍କିଳା ଶବ୍ଦ କଲେ । ସେଇ ଶବ୍ଦ ଚାରିଆଡ଼େ ପ୍ରତିଧ୍ୱନିତ ହେଲା । ତାପରେ ଦୌଡ଼ ଆରମ୍ଭ ହେଲା ।

କୋକିଶିଆଳୀ ଭାବିଲା- ବୁଦ୍ଧି ବଳରେ ସେ ତ ବହୁବାର ଗଧିଆକୁ ଓ ହେଟା ବାଘକୁ ଠକିଛି । ସେଇଟା ତାହାର ବାହାଦୁରୀ । ପରକୁ ଠକିବାରେ ସେ ଧୁରନ୍ଧର । ଏଥର ସେ ବି ଦଣ୍ଡିକିରୀକୁ ଠକିବ । ଦଣ୍ଡିକିରୀ ଯେତେବେଳେ ନଈର ଅଙ୍କାବଙ୍କା ବାଟ ଦେଇ ଧାଉଁଥିବ, ସେତେବେଳେ ସେ ନଈକୂଳେ କୂଳେ ନଯାଇ ସିଧା ବାଟରେ ଯିବ । ତେଣୁ ତାକୁ କମ୍ ବାଟ ଧାଇଁବାକୁ ପଡ଼ିବ । ସେଇ ଅନୁସାରେ ସେ ନଈର କୂଳେ କୂଳେ ନ ଯାଇ ବାଙ୍କ ମୁଣ୍ଡରେ ପହଞ୍ଚିବା ପାଇଁ ସିଧା ବାଟରେ ଧାଇଁଲା । ପ୍ରଥମ ବାଙ୍କରେ ପହଞ୍ଚି ପଚାରିଲା- "ଦଣ୍ଡିକିରୀ ତୁ କେଉଁଠି ?"

ପ୍ରତିଯୋଗିତାରେ ଭାଗ ନେଉଥିବା ଦଣ୍ଡିକିରୀ ତ ତା ଜାଗାରେ ଶୋଇଗଲା । ସେଇ ବାଙ୍କ ମୁଣ୍ଡରେ ଯେଉଁ ଦଣ୍ଡିକିରୀ ମାଛ ଅପେକ୍ଷା କରୁଥିଲା, ସେ ସାଥି ସାଥି କୋକିଶିଆଳୀକୁ ଜବାବ ଦେଲା- "କୋକି, ମୁଁ ଏଇଠି ।"

କିଏ କହୁଛି, ଦେଖିବାକୁ କୋକିଶିଆଳୀର ବେଳ ନଥିଲା । ସେ ପୁଣି ଧାଇଁଲା, ଏଥର ଦୂର ବାଙ୍କ ମୁଣ୍ଡରେ ପହଞ୍ଚିବା ପାଇଁ ସେ ବନ ଜଙ୍ଗଲ ଭିତରେ ଧାଇଁଲା । ଦ୍ୱିତୀୟ ବାଙ୍କରେ ପହଞ୍ଚି ସେ ପଚାରିଲା- "ଦଣ୍ଡିକିରୀ ତୁ କେଉଁଠି ?"

ଉତ୍ତର ଆସିଲା- "କୋକି, ମୁଁ ଏଇଠି ।"

ଦଣ୍ଡିକିରୀ ଯେ ଏତେ ବାଟ ଦୌଡ଼ି ଆସି ପାରିଛି ଏହା ଭାବି କୋକିଶିଆଳୀର ରାଗ ବଢ଼ିଗଲା। ଏ ଯେ ସେ ଦଣ୍ଡିକିରୀ ନୁହଁ, ତାର ପ୍ରତିନିଧି, ସେକଥା ସେ ବି ଚିନ୍ତା କରିପାରିଲା ନାହିଁ। ସେ ସେଠି ଆଉ ଅପେକ୍ଷା ନକରି ପୁଣି ଧାଇଁବାକୁ ଲାଗିଲା। ଆଗ ବାଙ୍କରେ ନ ପହଞ୍ଚିବା ପର୍ଯ୍ୟନ୍ତ ଟିକିଏ ବି ବିଶ୍ରାମ ନେଲା ନାହିଁ। ଉତ୍କଣ୍ଠା ତାର ବହୁତ। ସେଠି ପହଞ୍ଚୁ ପହଞ୍ଚୁ ସେ ପଚାରିଲା- "ଦଣ୍ଡିକିରୀ ତୁ କେଉଁଠି ?"

ମୁଁ ଏଇଠି ଉତ୍ତର ଆସିଲା।

କୋକିଶିଆଳୀ ଦେଖିଲା- ଦଣ୍ଡିକିରୀ ତା'ଠାରୁ ଆଗୁଆ ଅଛି। ଯେମିତି ହେଲେ, ତାକୁ ପଛରେ ପକାଇବାକୁ ହେବ। ସେଥିପାଇଁ ସେ ପୁଣି ଧାଇଁଲା। ଟିକିଏ ହେଲେ ବି ବିଶ୍ରାମ ନେଲା ନାହିଁ। ଏଥର ପୁଣି ଏକ ବାଙ୍କ ପାଖରେ ପଚାରିଲା- "ଦଣ୍ଡିକିରୀ ତୁ କେଉଁଠି ?"

ପୁଣି ସେଇ ଉତ୍ତର- "ମୁଁ ଏଇଠି" ଭାସି ଆସିଲା।

ଏ ଉତ୍ତର ଶୁଣି କୋକିଶିଆଳୀଟି ହତୋତ୍ସାହ ହେଲାନାହିଁ। ଏଥର ସେ ଶେଷ ଚେଷ୍ଟା କରିବ ବୋଲି ସ୍ଥିର କରିନେଲା। ତାର ଯେତେ ଜୋର ଅଛି, ସବୁ ଲଗାଇ ସେ ଧାଇଁଲା। ନଦୀର ଉତ୍ପତ୍ତି ସ୍ଥଳକୁ ସିଧା ଯିବ। ଏତେ ବାଟ କେମିତି ଦଣ୍ଡିକିରୀ ଯିବ, ସେ କଳ୍ପନା କରି ପାରିଲା ନାହିଁ। ଏଥର ଯେ ଦଣ୍ଡିକିରୀ ପଛେଇଯିବ, ତାହା ଥିଲା ତାର ଦୃଢ ବିଶ୍ୱାସ। ଯେତେବେଳେ ନଦୀର ଉତ୍ପତ୍ତି ସ୍ଥଳ ପାଖେଇ ଆସିଲା ସେ ଦେଖିଲା ନଈଟି କଳ କଳ ହୋଇ ବୋହି ଯାଉଛି। ଏ ଶବ୍ଦ ମଧୁର। ଚିତ୍ତାକର୍ଷକ। କିନ୍ତୁ କୋକିଶିଆଳୀ ତ ପ୍ରତିଯୋଗୀ। ତା'ର ଏ ଶବ୍ଦ ଶୁଣିବାକୁ ବେଳ କେଉଁଠି ଅଛି ?

ନଦୀର ଉତ୍ପତ୍ତି ସ୍ଥଳରେ ପହଞ୍ଚି କୋକିଶିଆଳୀ ପଚାରିଲା- "ଦଣ୍ଡିକିରୀ, ତୁ କେଉଁଠି ?"

"ମୁଁ ଏଇଠି" ଉତ୍ତର ଭାସି ଆସିଲା।

କୋକିଶିଆଳୀ କ୍ଳାନ୍ତ । ଅବସନ୍ନ । ଦୌଡ଼ି ଦୌଡ଼ି କଣ ସେ ପାଇଲା ? ହତାଶ । ପରାସ୍ତ । କୋକିଶିଆଳୀର ଗର୍ବ ଧୂଳିସାତ ହୋଇଗଲା, ସେ ନିକେ ଅନୁଭବ କଲା । ଯେଉଁ ଶଠତାରେ କୋକିଶିଆଳୀ ଧୂରନ୍ଧର ସେ ଶଠତାର ଯେ ସେ ଶିକାର, ସେ କଥା ସେ ଜାଣିପାରିଲା ନାହିଁ ।

ଏହା କେତେ କାଳର କଥା, କେହି କହିପାରିବ ନାହିଁ । କିନ୍ତୁ ଯେଉଁ ନଦୀରେ ଏ ପ୍ରତିଯୋଗିତା ହୋଇଥିଲା, ସେଇ କାଳର ଲୋକେ ସେ ନଦୀକୁ ଦଣ୍ଡିକିରୀ (ବୁରବୋଟ୍) ନଇ ବୋଲି କହନ୍ତି । ଖାଲି ସେତିକି ନୁହେଁ ଏବେବି ଲୋକେ କହୁଛନ୍ତି, କୋକିଶିଆଳୀ ଧୂର୍ତ୍ତ । ସବୁ ପଶୁ ପକ୍ଷୀମାନଙ୍କୁ ଠକିପାରେ । ବ୍ୟତିକ୍ରମ ଦଣ୍ଡିକିରୀ ମାଛ । ଅଳସୁଆ ହେଲେ କ'ଣ ହେବ, ସେ ଭାରି ବୁଦ୍ଧିଆ ।



# କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ

## (ଇ ଇଭେନ୍ ରୂପକଥା)

ଦିନେ କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ ଗୋଟିଏ ଗଛ ଡାଳରେ ବସିଥିଲା । ଏତିକିବେଳେ କଣଟାଏ ତା ମୁଣ୍ଡ ଉପରେ ପଡ଼ିଗଲା । ସେ ଚିତ୍କାର କଲା- "ଆକାଶ ଖସି ପଡୁଛି । ମୁଁ ଯିବି । ଇଗଲକୁ ଏ କଥା କହିବି ।"

ସେ ଇଗଲ ପାଖକୁ ବାହାରିଲା । ଯାଉ ଯାଉ ବାଟରେ ସେ ଲମ୍ବା ବେକା କାଠହଣା ଚଢ଼େଇକୁ ଭେଟିଲା । ଲମ୍ବା ବେକା ପଚାରିଲା- "କିଓ କର୍କଶ କଣ୍ଠିଆ, କୁଆଡ଼େ ଯାଉଛ ?"

"ଆକାଶ ଖସି ପଡୁଛି । ଏକଥା କହିବାକୁ ଇଗଲ ପାଖକୁ ଯାଉଛି ।" କର୍କଶ କଣ୍ଠିଆ ଉତ୍ତର ଦେଲା ।

"ମୁଁ ତୋ ସାଥିରେ ଯାଇପାରେ କି ?"

"ଆଗରେ ଚାଲ।"

ଲମ୍ବା ବେକ କାଠ ହଣା ଚଢ଼େଇଟି କର୍କଶ କଣ୍ଠିଆ ତିତ୍ତିର ପକ୍ଷୀର ସାଥୀ ହେଲା। ଦୁଇଜଣ ଏକାଠି ବାହାରିଲେ। ବାଟରେ ଯାଉ ଯାଉ ସେମାନେ ମୋଟା ବତକକୁ ଭେଟିଲେ। ମୋଟା ବତକ ପଚାରିଲା- "ହଇଓ କର୍କଶ କଣ୍ଠିଆ ଓ ଲମ୍ବା ବେକା କୁଆଡ଼େ ଯାଉଛ ?"

"ଇଗଲ ପାଖକୁ ଯାଉଛୁ। ଆକାଶ ଖସି ପଡୁଛି। ସେ କଥା ତାକୁ କହିବୁ।"

"ମୁଁ ତମମାନଙ୍କ ସାଥୀରେ ଯାଇପାରେ କି ?"

"ଆଗରେ ଚାଲ।"

ମୋଟା ବତକ, କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ ଓ ଲମ୍ବା ବେକା କାଠହଣା ଚଢ଼େଇ ସାଥୀରେ ବାହାରିଲା। ତିନିଜଣ ଯାକ ସାଥୀ ହୋଇ ଗଲେ। ବାଟରେ ଯାଉ ଯାଉ ସେମାନେ ଧୂସର ପୁଚ୍ଛିଆ କୁଣ୍ଡାଖାଇ ଚଢ଼େଇକୁ ଦେଖିଲେ। ଧୂସର ପୁଚ୍ଛିଆ ପଚାରିଲା- "କିଓ କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ, ଲମ୍ବା ବେକା କାଠହଣା ଓ ମୋଟା ବତକ କୁଆଡ଼େ ଯାଉଛ ?"

"ଆମେ ଇଗଲ ପାଖକୁ ଯାଉଛୁ। ଆକାଶ ଖସି ପଡୁଛି। ଆମେ ତାକୁ ଏକଥା ଜଣାଇବୁ।"

"ମୁଁ ତମମାନଙ୍କ ସାଥୀରେ ଯାଇ ପାରେ କି ?"

"ଆଗରେ ଚାଲ।"

ଧୂସର ପୁଚ୍ଛିଆ କୁଣ୍ଡାଖିଆ, କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ, ଲମ୍ବାବେକା କାଠହଣା ଚଢ଼େଇ, ମୋଟା ବତକ ସହିତ ସାଥୀ ହେଲା। ସେମାନେ ଏକାଠି ବାହାରିଲେ। ବାଟରେ ଯାଉ ଯାଉ ସେମାନେ ଧୂର୍ତ୍ତ ଓ ଠକ କୋକିଶିଆଳୀକୁ ଭେଟିଲେ।

ଧୂର୍ତ୍ତ ଓ ଠକ ପଚାରିଲା- "ହଇଓ, ତୁମେ ସମସ୍ତେ କୁଆଡ଼େ ମାଡ଼ି ଚାଲିଛ ?"

"ଇଗଲକୁ ଭେଟିବାକୁ ଯାଉଛୁ । ଆକାଶ ଖସି ପଡୁଛି । ଆମେ ତାକୁ ଜଣାଇବୁ ?"

"ତୁମ୍ଭେମାନେ ଭୁଲ ବାଟରେ ଚାଲି ଆସିଲ । ତୁମେ ଯଦି ଚାହଁ, ମୁଁ ତୁମକୁ ଠିକ ବାଟ ଦେଖାଇଦେବି ।"

"ଆମେ ଖୁବ୍ ତରତର ହେଉଛୁ । ହେ ଧୂର୍ତ୍ତ, ଠକ, ଦୟାକରି ଆମକୁ ଠିକ୍ ବାଟ ବତାଇ ଦିଅ ।"

"ତାହାହେଲେ ମୋ ସାଥୀରେ ଆସ ।"

ଆଗେ ଆଗେ ଧୂର୍ତ୍ତ ଠକ ଡଗ ଡଗ ହୋଇ ଚାଲିଲା । ତା ପଛେ ପଛେ କର୍କଶ କଣ୍ଠିଆ ତିତ୍ତିର ପକ୍ଷୀ, ଲମ୍ବା ବେକା କାଠହଣା ଚଢ଼େଇ, ମୋଟା ବତକ ଓ ଧୂସର ପୁଚ୍ଛିଆ କୁଣ୍ଡାଖାଇ ପାରୁ ପର୍ଯ୍ୟନ୍ତ କୋରରେ ଚାଲିଲେ । ଚାଲି ଚାଲି ଶେଷକୁ ସେମାନେ ଧୂର୍ତ୍ତ ଓ ଠକ ଘର ପାରେ ପହଞ୍ଚିଗଲେ । ସେଠି ପଡ଼ିଆରେ ଗୋଟେ ଅନ୍ଧାରିଆ ଗାତ ଛଡ଼ା ଆଉ କିଛି ନଥିଲା ।

ଧୂର୍ତ୍ତ ଓ ଠକ କହିଲା- "ଏଇଟା ଇଗଲର ଘର । ମୁଁ ଆଗ ଯାଉଛି । ମୋ ପଛେ ପଛେ ତୁମ୍ଭେମାନେ ଆସ ।"

ଗାତ ଭିତରକୁ କୋକିଶିଆଳୀଟି ଚାଲିଗଲା । ସେଠି ଧୀର ସ୍ଥିର ଭାବରେ ଅପେକ୍ଷା କଲା ।

ପ୍ରଥମେ ଲମ୍ବା ବେକା କାଠହଣା ଚଢ଼େଇ ତା ପଛେ ପଛେ ଗଲା । କୋକିଶିଆଳୀଟି ତାକୁ ମାଡ଼ି ବସି ତାର ତଣ୍ଟି କଣା କଲା । ତାପରେ ତା ପଛକୁ ତାକୁ ପକାଇ ଦେଲା ।

ଲମ୍ବା ବେକା କାଠହଣା ଚଢ଼େଇ ପରେ ମୋଟା ବତକ ଗାତ ଭିତରକୁ ଗଲା । ତାକୁ କୋକିଶିଆଳୀ ମାଡ଼ିବସି ତାର ତଣ୍ଟିକି କଣା କଲା । ତାକୁ ବି ତା ପଛପଟକୁ ପକାଇ ଦେଲା ।

ମୋଟା ବତକ ପଛକୁ କର୍କଶ କଣ୍ଠିଆ ତିତିର ପକ୍ଷୀ ତା ଭିତରକୁ ଗଲା । କୋକିଶିଆଳୀ ତାକୁ ଯେମିତି ଧରିବାକୁ ଯାଇଛି, ସେ ଏପରି ଚିତ୍କାର କଲା ଯେ ଧୂସର ପୁଚ୍ଛିଆ କୁଣ୍ଡାଖିଆ ଚଢ଼େଇ ତାହା ଶୁଣି ତାକୁ ସାହାଯ୍ୟ କରିବା ପାଇଁ ଗାତ ଭିତରେ ପଶିଗଲା । ସେମାନେ କୋକିଶିଆଳୀର ପଛପଟୁ ଭୟଙ୍କର ଭାବରେ ଆକ୍ରମଣ କଲେ । କୋକିଶିଆଳୀଟି ବୁଲି ପଡ଼ିଲା । ତାଙ୍କୁ ଆକ୍ରମଣ କରିବା ପୂର୍ବରୁ ସେମାନେ ତାଙ୍କ ପାଦ ଯେତେ ଜୋରରେ ତାଙ୍କୁ ନେଇପାରେ ସେଇ ଜୋରରେ ତାଙ୍କ ଘରକୁ ଦୌଡ଼ିଲେ ।

ଆକାଶ ଖସି ପଡୁଛି । ଏକଥା କେହିହେଲେ ଇଗଲକୁ କହି ପାରିଲେ ନାହିଁ ।

ଅବିଶ୍ୱାସୀ ତ ଅବିଶ୍ୱାସୀ । ତାକୁ ବିଶ୍ୱାସ କଲେ ସର୍ବନାଶ ।



## ଲୋଭୀ କାଠହଣା ଚଢ଼େଇ

### (ଇଇଭେନ ରୂପକଥା)

ଶରତ ଋତୁ ଯିବାର ପରଦିନ ବି ଗଲାଣି । ଶୀତ ମାଡ଼ି ଆସୁଛି । ବରଫ ପଡ଼ିଯିବ । ଏଠାରେ ତ ଆଉ ରହି ହେବ ନାହିଁ । ତେଣୁ ପକ୍ଷୀମାନେ ଦକ୍ଷିଣ ଯିବା ପାଇଁ ଉଛନ୍ନ । ଗଲା ସାତଦିନ ଧରି ସେମାନେ ଜଙ୍ଗଲର ଶେଷ ସୀମାରେ ପ୍ରସ୍ତୁତ ହେଉଥିଲେ ।

ପକ୍ଷୀମାନେ ଦଳ ବାଂଧି ଦକ୍ଷିଣକୁ ଯାଆନ୍ତି । ସେମାନଙ୍କ ମଧ୍ୟରେ ଏକତା ଅସମ୍ଭବ ରକମର । ପରସ୍ପର ପ୍ରତି ପ୍ରୀତି ଓ ଶ୍ରଦ୍ଧା ଅକଳନ । ସେଥିପାଇଁ ସେମାନେ ପରସ୍ପର ମଧ୍ୟରେ ପଚରା ପଚରି ହୁଅନ୍ତି "ସମସ୍ତେ ଆସିଛନ୍ତି ତ ? ସମସ୍ତେ ଏଠାରେ ଅଛନ୍ତି ତ ? ଆସ, କୁହ ।"

ଯାହା ଦେଖା ହେଲା, କାଠ ହଣା ଚଢ଼େଇ ଛଡ଼ା ଆଉ ସମସ୍ତେ ସେଠି

ରୁଷ୍ଟ ହୋଇଛନ୍ତି । ତାକୁ ନ ନେଲେ ତ ଯାଇ ହେବ ନାହିଁ । ତାକୁ ଆଣିବାକୁ ହେବ । ଏକଥା ସବୁ କଥାବାର୍ତ୍ତା ହେଲେ ।

ସୁନେଲି ଇଗଲ ଏକଥା ଶୁଣି ରାଗିଗଲା । ତାର ତ କୁଜା ଥଣ୍ଟା ସେଥିରେ ସେ ଖଣ୍ଡେ ଶୁଖିଲା ଡାଳ ଭାଙ୍ଗିଦେଲା । ତାପରେ ତରୁଣ ଧୂସର କୁକୁଡ଼ାକୁ ଆଦେଶ ଦେଲା- "ଯା କାଠହଣା ଚଢ଼େଇକୁ ଧରିଆଣ ।"

ପକ୍ଷକୁ ଫଡ଼ ଫଡ଼ କରି ଧୂସର କୁକୁଡ଼ା ଉଡ଼ିଗଲା । ଘନ ଜଙ୍ଗଲ ଭିତରେ ପଶି ଏଠି ସେଠି ଉଣ୍ଡି ଉଣ୍ଡି ଶେଷକୁ ଦେଖିଲା- କାଠହଣା ଚଢ଼େଇଟି ଦେବଦାରୁ ଫଳରୁ ଖୋଳପା ଛଡ଼ାଇ ରସ ଖାଇବାରେ ବ୍ୟସ୍ତ ।

ଧୂସର କୁକୁଡ଼ାଟି ତାକୁ କହିଲା- "ବଂଧୁବର, ଆମେ ସମସ୍ତେ ଦକ୍ଷିଣକୁ ଉଡ଼ିଯିବା ପାଇଁ ତତ୍‌ପର । ତୋ ଯୋଗୁ ଆମେ ନ ଯାଇ ଅପେକ୍ଷା କରିଛୁ ।"

"ବର୍ତ୍ତମାନ ମୋତେ ସେ ବାକେ କଥା କୁହ ନାହିଁ । ତରତର ହେବାର ଆମର କଣ ଅଛି ? ଜଙ୍ଗଲରେ ଖାଦ୍ୟର ଅଭାବ ନାହିଁ । ଏହାକୁ ଛାଡ଼ି ଯିବା ବୋକାମି ।" କାଠହଣା ଚଢ଼େଇ ଉତ୍ତର ଦେଲା ।

ସେଠି ଧୂସର କୁକୁଡ଼ାଟି ଜଙ୍ଗଲର ମୁଣ୍ଡକୁ ଉଡ଼ିଗଲା । ସେ ସେଠି ଘୋଷଣା କଲା- କାଠ ହଣା ଚଢ଼େଇ ଦେବଦାରୁ ଫଳର ରସ ଖାଇବାରେ ବ୍ୟସ୍ତ । ଦକ୍ଷିଣକୁ ଯିବାକୁ ତାର ଜମା ଆଗ୍ରହ ନାହିଁ ।

ଏକଥା ଶୁଣି ସମସ୍ତେ କହିଲେ- "ବିପଦ ମାଡି ଆସୁଛି ବୋଲି ବୋଲି ସେ ସିନା ବୁଝୁନାହିଁ, ହେଲେ ତାକୁ ଛାଡ଼ି ଯିବାଟା ଆମର ଉଚିତ ହେବ ନାହିଁ ।" ସେଥିପାଇଁ ସୁନେଲି ଇଗଲ ଶୀଘ୍ର ଉଡୁଥିବା ଛଞ୍ଚାଣକୁ କହିଲା- "ତୁ ଯା, ଶୀଘ୍ର କାଠହଣା ଚଢ଼େଇକୁ ଧରି କରି ଆସ ।"

ଛଞ୍ଚାଣ ଆଦେଶ ପାଇବାମାତ୍ରେ ଉଡ଼ିଗଲା । ଦେବଦାରୁ ଜଂଗଲ ଉପରେ ଚକ୍ରୀ ମାରିଲା । ପଶୁ ପକ୍ଷୀ ଜଙ୍ଗଲରେ ନଥିବାରୁ ଚାରିଆଡ଼ ନିଶବ୍ଦ । ଶାନ୍ତ । ଏମିତିକି କାଠହଣା ଚଢ଼େଇର ଦେବଦାରୁ ଫଳରୁ ଚୋପା

ଛଡ଼ାଇବାର ଶବ୍ଦ ଅତି କ୍ଷୀଣ ହେଲେ ବି ସୁସ୍ପଷ୍ଟ। ଏଇ ଶବ୍ଦ ଶୁଣି ଛଅଆଣଟି କାଠହଣା ଚଢ଼େଇକୁ ଠାବ କରି ତା ପାଖକୁ ଗଲା। ତାକୁ କହିଲା- "ହେ କାଠହଣା ଚଢ଼େଇ, ତୋ ପାଇଁ ଆମେ ପ୍ରାୟ ଗୋଟିଏ ପକ୍ଷ ଅପେକ୍ଷା କଲୁଣି। ଦକ୍ଷିଣକୁ ଉଡିଯିବା ପାଇଁ ଏହା ଉଚିତ ସମୟ। ଆଉ ଡେରି କରି ହେବ ନାହିଁ। ଶୀଘ୍ର ଆ।"

"ତୋର ତରତର ହେବାର କଣ ଅଛି ? ଆମେ ତ ଯିବା। ଯିବା ପୂର୍ବରୁ ପେଟେ ଖାଇବାଟା ନିହାତି ଦରକାର।" କାଠ ହଣା ଚଢେଇ ଜବାବ ଦେଲା।

ଛଅଆଣଟି ଜଗଂଲ ପ୍ରାନ୍ତକୁ ଫେରି ଆସି ଜଣାଇଲା- "କାଠ ହଣା ଚଢେଇର ସେମାନଙ୍କ ସାଥୀରେ ଦକ୍ଷିଣକୁ ଯିବା ପାଇଁ ତରବର ହେଉନାହିଁ।"

ଏହା ଶୁଣି ସୁନେଲି ଇଗଲ ଖୁବ ରାଗିଗଲା। କାଠହଣା ଚଢେଇ ପାଇଁ ଆଉ ଅପେକ୍ଷା ନ କରିବାକୁ ସେ ସ୍ଥିର କଲା। ସେ ଆକାଶକୁ ଉଡିଗଲା। ତାପରେ ଅନ୍ୟମାନେ ଉଡିବା ଆରମ୍ଭ କଲେ। ତା ପଛେ ପଛେ ସମସ୍ତ ଚଢେଇ ଉଡିବାକୁ ଲାଗିଲେ।

କାଠହଣା ଚଢେଇ ଦେବଦାରୁ ଫଳରୁ ଖୋଳ ଛଡାଇ ରସ ଖାଇବାରେ ଆଉ ସାତଦିନ ବ୍ୟସ୍ତ ରହିଲା। ଅଷ୍ଟମ ଦିନ ସେ ଖାଇବା ତାର ବନ୍ଦ କଲା। ତାପରେ ତାର ଥଣ୍ଟ ଓପକ୍ଷକୁ ସଫା କଲା।

"ମୁଁ ଭାବୁଛି, ଆଉ ରସ ମୁଁ ଖାଇପାରିବି ନାହିଁ। ଯାହା ରହିଲା, ସେସବୁ ଗୁଣ୍ଡୁଚି ମୂଷାଙ୍କ ପାଇଁ ଥାଉ।" ସେ କହିଲା।

ତାପରେ ଅନ୍ୟ ପକ୍ଷୀମାନଙ୍କ ସହ ମିଶିବାକୁ ସେ ଉଡି ବାହାରିଲା।

ସେ ଜଗଂଲର ପ୍ରାନ୍ତକୁ ଆସିଲା। ସେ ତାର ଆଖିକୁ ବିଶ୍ୱାସ କରି ପାରିଲା ନାହିଁ। ଦେବଦାରୁ ଗଛର ଗୋଟିଏ କଡ ବି ନାହିଁ। ତାର ହାଡି ସବୁ ରୁକ୍ଷ। ଧୂସର। ଗଛ ସବୁ ଧଳା। ସତେକି ବରଫରେ ତାକୁ ଆଚ୍ଛାଦିତ

କରାହୋଇଛି । ଚଢେଇମାନେ ଏଠି ଚଉଦଦିନ କାଳ ଅପେକ୍ଷା କରିଥିଲେ । ସେ ସମୟରେ ସେମାନେ ସବୁ ଗଛର କଡମାନ ଖାଇଦେଇଛନ୍ତି । ତାଙ୍କ ପକ୍ଷ ସଫା କରିବା ପାଇଁ ଗଛ ଦେହରେ ଘସି ହୋଇଛନ୍ତି । ଫଳରେ ଗଛସବୁ ଧଳା ହୋଇ ଯାଇଛି ।

କାଠ ହଣା ଚଢେଇଟି ଦେଖିଲା-ପୁରା ଜଗଂଲରେ କେହି କେଉଁଠି ନାହାନ୍ତି । ସେ ସଂପୂର୍ଣ୍ଣ ଭାବରେ ଏକୁଟିଆ । ଶୀତ ମାଡି ଆସୁଛି । ଚାରିଆଡେ ବରଫ ପଡିଯିବ । ଶୀତ ଦିନକୁ ସେ କଣ କରିବ ଜାଣି ପାରିଲା ନାହିଁ । ସେ ସଂପୂର୍ଣ୍ଣ ଅସହାୟ ଅନୁଭବ କଲା । ସେଥିପାଇଁ ସେ କାନ୍ଦି କାନ୍ଦି କହୁଥିଲା- "ଏ ଏକୁଟିଆ ଶୀତଦିନ କିପରି କାଟିବି ?"

ସେ ଏପରି ଜୋରରେ କାନ୍ଦିଲା ଯେତାର ଆଖି ଉପରେ ରୁମ ସବୁ ରକ୍ତ ବର୍ଣ୍ଣ ହୋଇଗଲା ।

ଏହା ଭିତରେ ବହୁ ବର୍ଷ ବିତି ଯାଇଛି । ଯେତେବେଳେ କାଠହଣା ଚଢେଇର ପିଲାମାନେ, ତାଙ୍କର ପିଲାମାନେ, ତାଙ୍କର ବଂଧୁବାନ୍ଧବ ଜ୍ଞାତି କୁଟୁମ୍ବ ଏକଥା ଶୁଣନ୍ତି, ସେମାନେ ଖୁବ୍ କାନ୍ଦନ୍ତି । ସେଇଦିନୁ ସେଥିପାଇଁ ଜଗଂଲରେ ଯେତେ କାଠହଣା ଚଢେଇ ଅଛନ୍ତି, ତାଙ୍କର ଆଖି ପାଖ ରୁମ ଲାଲ ।

ଗୋଷ୍ଠିକଥା ନମାନିଲେ ବିପଦ ଅନିବାର୍ଯ୍ୟ ।



# ଭାଲୁ, ଗ୍ଲୁଟନ ଓ ଗଧିଆ

## (ଇଇଭେନ ରୂପକଥା)

(ଗ୍ଲୁଟନ ଗଧିଆ ସଦୃଶ ଜୀବଟିଏ । ସେ ବହୁତ ଖାଏ । ଏହା ଏସିଆ ଓ ଇଉରୋପର ଉତ୍ତରାଂଶରେ ଦେଖାଯାଏ ।)

ଏକଦା ଭାଲୁ, ଗ୍ଲୁଟନ ଓ ଗଧିଆ ଏକାଠି ରହୁଥିଲେ । ସେମାନେ ଘନିଷ୍ଠ ବଂଧୁ । ସେମାନଙ୍କ ମଧ୍ୟରେ ସଦ୍‌ଭାବ ବହୁତ ଥିଲା । ସେମାନେ କେବେହେଲେ କଳି କରୁନଥିଲେ ।

ଗ୍ଲୁଟନର ଗୋଟିଏ ଭଉଣୀ ଥିଲା । ବୟସ ବଢିବା ସଂଗେ ସେ ବି ବଡ ହୋଇଗଲା । ଦେଖିବାକୁ ସେ ଥିଲା ଅନିନ୍ଦ୍ୟ ସୁନ୍ଦରୀ । ଗଧିଆଟି ତାକୁ ବିବାହ କରିବାକୁ ଚାହିଁଲା । ସେ ଗ୍ଲୁଟନକୁ କହିଲା- "ଗ୍ଲୁଟନ, ତୋ ଭଉଣୀକୁ ମୋତେ ବିବାହ କର ।"

ଗ୍ଲୁଟନ କହିଲା- "ନା, ନା, ଗଧିଆ । ତୁ ତାର ଯୋଗ୍ୟ ପାତ୍ର ନୁହେଁ । କାରଣ ତୁ ଦେଖିବାକୁ ଧୂସର । ତୋର ବରଫରେ ଜନ୍ମ । କିନ୍ତୁ ଆମେ ଗ୍ଲୁଟନମାନେ କଳା । ଆମେମାନେ ମାଟିରୁ ଜନ୍ମ ।

ସେମାନଙ୍କ ମଧ୍ୟରେ ଯୁକ୍ତି ତର୍କ ବହୁ ସମୟ ଧରି ଚାଲିଲା । କିନ୍ତୁ କେହି କାହା କଥାରେ ରାଜି ହୋଇ ପାରିଲେ ନାହିଁ । ଶେଷକୁ ଗଧିଆ କହିଲା- "ଚାଲ ଆମ ବଡ ଭାଇ ଭାଲୁ ପାଖକୁ ଯିବା । ଆମ ଭିତରେ କିଏ ଠିକ୍, ତାକୁ ପଚାରିବା । ସେ ଯାହା ସ୍ଥିର କରିବ, ଆମେ ମାନିନେବା ।"

ସେମାନେ ଭାଲୁ ଘରକୁ ଆସିଲେ । ଗଧିଆ ଭାଲୁକୁ କହିଲା- "ମୁଁ ଗ୍ଲୁଟନକୁ କହିଲି- "ତୋ ଭଉଣୀକୁ ତୁ ମୋତେ ବିବାହ କର । ସେ କିନ୍ତୁ ରାଜି ହେଉନାହିଁ । ସେଥିପାଇଁ ଆମ ଭିତରେ କଳି । ତୁ ଆମ ବଡ ଭାଇ ।

ଆମେ ତୋତେ ମଧ୍ୟସ୍ଥ ମାନୁଛୁ। ଆମ ଭିତରେ କିଏ ଠିକ୍, ତୁ ତାର ନିଷ୍ପତ୍ତି କରିଦେ।"

ଭାଲୁ କହିଲା- "ତୁମ୍ଭେମାନେ ତୁମମାନଙ୍କ ମଧ୍ୟରେ ମିମାଂଶା କରି ପାରିଲ ନାହିଁ। ସେଥିପାଇଁ ତୁମେମାନେ ଦଣ୍ଡ ପାଇବ। ଆଜିଠାରୁ ଗଧିଆ ତୁ ଅଲଗା ରହିବୁ। କାହା ସାଥୀରେ ମିଶିବୁ ନାହିଁ। ବର୍ଷକୁ ତୋର ତିନୋଟି ଛୁଆରୁ ବେଶି ହେବ ନାହିଁ। ଆଉ ତୁ ଗ୍ଲଟନ, ତୋର ଗୋଟିକରୁ ଅଧିକ ଛୁଆ ହେବେନାହିଁ। ତୋର ଅଧିକାଂଶ ଛୁଆ ଫାଶରେ ପଡି ମରିବେ। ତୁ ବି ସେମିତି ମରିବୁ।"

ଭାଲୁ କଥାରେ ଗଧିଆ ଅତ୍ୟନ୍ତ ଦୁଖିତ। ସେ ଉତ୍ତର ଦେଲା ନାହିଁ। ଘରକୁ ଚାଲିଗଲା। କିନ୍ତୁ ଏହା ଶୁଣି ଗ୍ଲଟନ ଖୁବ୍ ରାଗିଗଲା। ସେ କହିଲା- "ଭାଲୁ, ତୁ ମୋତେ ଅଭିଶାପ ଦେଲୁ। ମୁଁ ମଧ୍ୟ ତାର ପ୍ରତିବଦଳରେ ତୋତେ ଅଭିଶାପ ଦେଉଛି। ଆଜିଠାରୁ ପ୍ରତି ଶୀତ ଋତୁରେ ତୁ ଗୋଟିଏ ଗାତ ତୋ ପାଇଁ କରିବୁ। ସେଇ ଗାତ ଭିତରେ ତୁ ଶୋଇ ରହିବୁ। ଲୋକମାନେ ଆସି ତତେ ହତ୍ୟା କରିବେ।"

ଭାଲୁ ଓ ଗ୍ଲଟନ ଯେପରି କହିଥିଲେ, ଠିକ ସେଇଆ ବି ହେଲା। ବର୍ଷକୁ ଗଧିଆର କେବେହେଲେ ତିନୋଟି ଛୁଆରୁ ଅଧିକ ହୁଏ ନାହିଁ। ଗ୍ଲଟନର ଗୋଟିଏ ଛୁଆ ହୁଏ। ଗ୍ଲଟନର ପିଲାମାନେ ଫାଶରେ ପଡି ମରନ୍ତି। ଭାଲୁ ଶୀତ ଋତୁସାରା ତାର ଗାତରେ ଶୋଇରହେ।



# ଭାଲୁ ଓ ଚିପ୍‌ମଙ୍କ
## (ଇଇଭେନ ରୂପକଥା)

(ଚିପ୍‌ମଙ୍କ ଗୁଣ୍ଡୁଚି ମୂଷା ଜାତୀୟ ଜୀବ। ସେ ମାଟିରେ ରହେ। ଶୀତ ପ୍ରଧାନ ଦେଶମାନଙ୍କରେ ଏହା ଦେଖିବାକୁ ମିଳେ। ତାର ପିଠିରେ ଗୁଣ୍ଡୁଚି ମୂଷାର ଦାଗଭଳି ଦାଗ ଅଛି।)

ଏକଦା ଭାଲୁଟିଏ ଥିଲା। ସେ ତାର ଗାତ ଭିତରେ ସାରା ଶୀତ ଋତୁ ଯାକ ଶୋଇରହିଥିଲା। ଯେତେବେଳେ ସୂର୍ଯ୍ୟର ପ୍ରଥମ କିରଣ ପଡି ବରଫ ତରଳିଲା, ନଈ ନାଳରେ ପାଣିର ସୁଅ ଛୁଟିଲା, ଭାଲୁଟିର ନିଦ ଭାଗିଂଗଲା। ସେ ତାର ଗାତ ଭିତରୁ ପଦାକୁ ଆସିଲା। ସାରା ଶୀତ ଋତୁଟା ସେ କିଛି ଖାଇ ନାହିଁ। ତେଣୁ ତାକୁ ଭାରି ଭୋକ। ଅପେକ୍ଷା ନକରି ସେ ଖାଦ୍ୟ ଖୋଜି ବାହାରିଲା। ଚାରିଆଡ ବୁଲିଲା। କେଉଁଠି କିଛି ଖାଇବା ଜିନିଷ ସେ ଦେଖିଲା ନାହିଁ। ଖାଦ୍ୟ ନ ପାଇବାରୁ ସେ ବିରକ୍ତ। ତାର ରାଗ ବି ବହୁତ। ଏଇ ସମୟରେ ଗୋଟିଏ ଗଛର ମୂଳ ଗଣ୍ଡି ଦେଖିଲା। ସେଇଟା ଖୁଣ୍ଟା। ତା ଉପରେ ରାଗ ଶୁଝାଇବାକୁ ସେ ତତ୍‌ପର। ତାକୁ ଉପାଡି ବାହାର କରିବାକୁ ସେ ଚେଷ୍ଟା କଲା। ତାକୁ ଧରି ବହୁତ ହଲାଇଲା। ସେ ତ ନ ଖାଇଥିବାରୁ ହାଲିଆ। କ୍ଲାନ୍ତ। ଦୁର୍ବଳ। ତେଣୁ ଖୁଣ୍ଟାଟି ଓପାଡି ବାହାର କରିବା ତା ପକ୍ଷରେ ଅସମ୍ଭବ। କିନ୍ତୁ ଖୁଣ୍ଟାଟାକୁ ହଲାଇବା ଫଳରେ ମୂଳ ତାର ଦୋହଲି ଗଲା। ସେଇ ଖୁଣ୍ଟା ମୂଳରେ ଚିପ୍‌ମଙ୍କଟିଏ ଗାତ କରି ରହିଥିଲା। ସେ ବି ଭାଲୁଭଳି ପୁରା ଶୀତ ଋତୁଟି ଶୋଇଥିଲା। ଭାଲୁଟି ଖୁଣ୍ଟା ଦୋହଲାଇବା ଫଳରେ ତାର ନିଦ ଭାଗିଂଗଲା। କ'ଣ ହେଉଛି ଜାଣିବା ପାଇଁ ସେ ପଦାକୁ ଆସି ଭାଲୁର ରାଗ ଦେଖି ଆଶ୍ଚର୍ଯ୍ୟ ହୋଇଗଲା। ସେ ଭାଲୁ ଖୁଣ୍ଟା ଦୋହଲାଇବା ଯେତେବେଳେ ବନ୍ଦ କଲା, ସେ ଅତି ବିନୟ ସହକାରେ

ପଚାରିଲା- "ବୁଢା ବାପା, ତମେ କଣ ପାଇଁ ଏତେ ରାଗିଛ? କଣ ପାଇଁ ଏ ଖୁଣ୍ଟାଟା ଦୋହଲାଉଛ ?"

ଭାଲୁ କହିଲା- "ଗଲା ଛ ମାସ ଧରି ମୁଁ ଖାଇନି। ମୋ ପେଟ ଜଳୁଛି। ଖାଇବା ପାଇଁ ବହୁତ ବୁଲିଲି। କିଛି ମିଳିଲା ନାହିଁ। ସେଥିପାଇଁ ରାଗ। ମୋତେ ଯଦି ପଚାରିଲୁ, ମୋତେ କିଛି ଖାଇବା ପାଇଁ ଦେଇ ପାରିବୁ ?"

"ବୁଢା ବାପା, ଟିକିଏ ଥୟ୍ ଧର। ମୋ ଘରେ ଶରତ ଋତୁରେ ସାଇତା ଖାଦ୍ୟ କିଛି ଅଛି। ମୁଁ ତାକୁ ଆଣୁଛି।" ଚିପ୍‌ମଙ୍କ କହି ଗାତ ଭିତରେ ପଶିଗଲା। କିଛି ଶୁଖିଲା ଫଳ ଓ ମିଠା ଚେର୍ ଧରି ଗାତ ଭିତରୁ ବାହାରି ଆସିଲା। ସେସବୁ ଭାଲୁ ଆଗରେ ରଖି କହିଲା- "ବୁଢାବାପା, ଏତକ ଖାଇନିଅ।"

ପାଖରେ ଖାଦ୍ୟ ଦେଖଲେ ଭୋକରେ ଆତୁର ଆନନ୍ଦ ହେବା ସ୍ୱାଭାବିକ। ଭାଲୁ ମୁଁହରେ ଆନନ୍ଦ। ସେ ଉତ୍‌ଫୁଲ। ଆଗରେ ଥୁଆ ହୋଇଥିବା ଖାଦ୍ୟକୁ ସେ ଅମୃତ ଭଳି ପାଇ୍‌ଦେଲା।

ତାପରେ ଚିପ୍‌ମଙ୍କକୁ କହିଲା- "ତୁ ଯଦିଓ କ୍ଷୁଦ୍ର ତଥାପି ତୋ ବ୍ୟବହାର, ସ୍ନେହ ଓ ଶ୍ରଦ୍ଧା ଅତୁଳନୀୟ୍। ଏହା କହି ସେ ଚିପ୍‌ମଙ୍କ ପିଠିକୁ ଆଉଁସି ଦେଲା। ଭାଲୁ ଆଂଗୁଠିର କଳା ଦାଗ ଚିପ୍‌ମଙ୍କ ପିଠିରେ ରହିଲା।

କେତେକାଳ କଥା, କେହି କହି ପାରିବା ସମ୍ଭବ ନୁହେଁ। ସ୍ନେହ ଶ୍ରଦ୍ଧା ଓ କୃତଜ୍ଞତାର ଚିହ୍ନ ଚିରଦିନ ଅମର। ଚିପ୍‌ମଙ୍କ ପିଠିରେ ଦାଗ ଏହା ଏକ ଜ୍ୱଳନ୍ତ ଉଦାହରଣ।



# ଉଡ଼ନ୍ତା ଗୁଣ୍ଡୁଚି

(ନେଗିଦାଲ ରୂପକଥା)

ଏକଦା ଗୋଟିଏ ଉଡ଼ନ୍ତା ଗୁଣ୍ଡୁଚି ଥିଲା । ତାର ପାଞ୍ଚଟି ଛୁଆ ।

ଦିନେ ଗୋଟିଏ କୋକିଶିଆଳୀ ତାକୁ ଦେଖିବାକୁ ଆସିଲା । ସେ କୋକିଶିଆଳୀର ଢ଼ଙ୍ଗ ଅପୂର୍ବ । ସେ ସବୁବେଳେ ଆଶ୍ଚର୍ଯ୍ୟ କଥା କରିବାକୁ ଚାହେଁ । ସେଥିପାଇଁ ସେ ଦି'ଟା ଶିଙ୍ଗ ତା ମୁଣ୍ଡରେ ଲଗାଇ ଥିଲା । ଯାହାକୁ ସେ ଡରାଇବାକୁ ଚାହେଁ । ତାକୁ ଡରାଏ ।

ସେ ଉଡ଼ନ୍ତା ଗୁଣ୍ଡୁଚିକୁ କହିଲା- "ମୋତେ ତୋ ଛୁଆରୁ ଗୋଟିଏ ଦେ ।"

"ନାଁ, ମୁଁ ଦେବି ନାହିଁ । ଛୁଆରୁ ତତେ ମୁଁ କାହିଁକି ଗୋଟିଏ ଦେବି ?" ଉଡ଼ନ୍ତା ଗୁଣ୍ଡୁଚିଟି କହିଲା ।

"ଆଚ୍ଛା ! ତାହାହେଲେ ତୋତେ ଭୂଷିକରି ମାରିଦେବି ।" ଉଡ଼ନ୍ତା ଗୁଣ୍ଡୁଚିର ଅନ୍ୟ ଉପାୟ କିଛି ନଥିଲା । ଭୟରେ ସେ ତାର ଛୁଆରୁ ଗୋଟିଏ କୋକିଶିଆଳୀକୁ ଦେଇଦେଲା ।

କୋକିଶିଆଳୀଟି ଚାଲିଗଲା । ପୁଣି ପରଦିନ ଆସିଲା । ସେ କହିଲା- "ଗୁଣ୍ଡୁଚି ମୋତେ ଗୋଟିଏ ଛୁଆ ଦେ ।"

"ମୁଁ ଦେବି ନାହିଁ ।"

"ନାହିଁ ! ତାହାହେଲେ ମୁଁ ଭୂଷିକରି ତୋତେ ମାରିଦେବି ।"

ଉଡ଼ନ୍ତା ଗୁଣ୍ଡୁଚି ଭାବିଲା- ତା'ର ରକ୍ଷାର ବାଟ ନାହିଁ । ସେ ବି ଆଉ କିଛି କରି ପାରିବ ନାହିଁ । ବାଧ୍ୟ ହୋଇ ଗୁଣ୍ଡୁଚିଟି ତାର ଦ୍ୱିତୀୟ ଛୁଆକୁ କୋକିଶିଆଳୀକୁ ଦେଲା ।

ସେଦିନ କୋକିଶିଆଳୀଟି ଚାଲିଗଲା । ପୁଣି ପରଦିନ ଆସି ହାଜର ।

ତାପରେ କହିଲା- "ଉଡ଼ନ୍ତା ଗୁଣ୍ଡୁଚି, ମୋତେ ଗୋଟିଏ ଛୁଆ ତୋର ଦେ।"

"ନାଁ, ମୁଁ ଦେବି ନାହିଁ।"

"ତାହାହେଲେ ମୁଁ ତୋତେ ଶିଙ୍ଗରେ ଭୂଷି ମାରିଦେବି।"

ଉଡ଼ନ୍ତା ଗୁଣ୍ଡୁଚି ତାର ତୃତୀୟ ଛୁଆକୁ କୋକିଶିଆଳୀକୁ ଦେଲା। କୋକିଶିଆଳୀ ଚାଲିଗଲା। ପୁଣି ତା ପରଦିନ ଆସି କହିଲା- "ଉଡ଼ନ୍ତା ଗୁଣ୍ଡୁଚି, ତୋର ଛୁଆଟିଏ ମୋତେ ଦେ।"

"ମୁଁ ଦେବିନାହିଁ।"

"ମୁଁ ଶିଙ୍ଗରେ ଭୂଷି ତୋତେ ମାରି ଦେବି।"

ତାର ତ ଉପାୟ ନଥିଲା। ଉଡନ୍ତା ଗୁଣ୍ଡୁଚି ତାର ଚତୁର୍ଥ ଛୁଆକୁ ବି କୋକିଶିଆଳିକୁ ଦେଲା। କୋକିଶିଆଳୀ ଚାଲିଗଲା। ସେ ଯିବା ପରେ ପରେ ବୁଡାବାପା ପେଚା ଉଡନ୍ତା ଗୁଣ୍ଡୁଚିକୁ ଦେଖିବା ପାଇଁ ଆସି ପହଞ୍ଚିଲା।

ବୁଡାବାପା ପେଚା ପଚାରିଲା- "ହଇରେ ଉଡନ୍ତା ଗୁଣ୍ଡୁଚି, ତୁ କାହିଁକି କାନ୍ଦୁଚୁ।"

"କୋକିଶିଆଳୀ ମୋ ପିଲାମାନଙ୍କୁ ମୋଠାରୁ ନେଇ ଖାଉଛି।"

-ସୁଁ ସୁଁ ହୋଇ କାନ୍ଦି କାନ୍ଦି ଉଡନ୍ତା ଗୁଣ୍ଡୁଚି କହୁଥିଲା।

"ଉଡନ୍ତା ଗୁଣ୍ଡୁଚି, ଆଉ କାନ୍ଦନା, ଯଦି କୋକିଶିଆଳୀ ଆସେ, ତାକୁ କହିବୁ, ତୋର ଘାସର ଶିଙ୍ଗକୁ ମୁଁ ଡରେ ନାହିଁ। ଯଦି ସେ ପଚାରେ, ତୋତେ କିଏ କହିଲା, ତୁ ମୋ ନାଁ କହିଦେବୁ।" ବୁଡାବାପା ପେଚା କହିଲା।

ପରଦିନ ପୁଣି କୋକିଶିଆଳୀ ଉଡ଼ନ୍ତା ଗୁଣ୍ଡୁଚି ପାଖକୁ ଆସି କହିଲା- "ମୋତେ ଗୋଟେ ଛୁଆ ଦେ।"

"ମୁଁ ଦେବି ନାହିଁ।" ଉଡନ୍ତା ଗୁଣ୍ଡୁଚି ଉତ୍ତର ଦେଲା।

"ନାଇଁ। ତାହାହେଲେ ମୁଁ ମୋ ଶିଙ୍ଗରେ ଭୁଷି ତୋତେ ମାରିଦେବି।" କୋକିଶିଆଳୀ ଧମକାଇଲା।

"ମୁଁ ତୋ ଘାସ ଶିଙ୍ଗକୁ ଡରେ ନାହିଁ।" ଉଡ଼ନ୍ତା ଗୁଣ୍ଡୁଚି ଉତ୍ତର ଦେଲା।

"ଏ କଥା କହିବାକୁ ତୋତେ କିଏ କହିଲା ?" କୋକିଶିଆଳୀ ପଚାରିଲା ।

"ବୁଢ଼ା ବାପା ପେଚା ।"

"ସେ କହିଛି । କହିଛି ସେ । ସେ କେଉଁଠି ରହେ ?"

"ଏଇ ପାହାଡ ଉପରେ ।"

କୋକିଶିଆଳୀଟି ଚାଲିଗଲା । ପାହାଡ ଉପରେ ପହଞ୍ଚି ବୁଢା ବାପା ପେଚାକୁ ଦେଖିଲା । ସେ ଧିରେ ଧିରେ ଲୁଚି ଲୁଚି ତାଙ୍କ ପାଖକୁ ଗଲା ।

"କିଏ ତୁ ଆସିଛୁ ? କୋକିଶିଆଳୀ ?" ବୁଢାବାପା ପେଚା ପଚାରିଲା । "ବୁଢାବାପା ପେଚା, ଛୋଟ ପକ୍ଷୀଟିଏ ଠିକ୍ ତମ ପଛରେ ଉଡିଆସି ବସିଛି । ତାକୁ ତମେ ଜମା ଡରାଅ ନାହିଁ ।" କୋକିଶିଆଳିଟି କହିଲା । ତା ପରେ ଯେଉଁ ଜାଗାରେ ପେଚାଟି ବସିଥିଲା, ସେ ଜାଗାକୁ ଲମ୍ଫ ମାରିଲା ।

କିନ୍ତୁ ବୁଢା ବାପା ତାଠାରୁ ଆହୁରି କ୍ଷୀପ୍ର । ସେ କୋକିଲିଆଳୀକୁ ତାର ପଞ୍ଝାରେ ଧରି ସିଧା ଆକାଶକୁ ଉଡିଗଲା । ତା ପରେ ସିଧା ସମୁଦ୍ର ଉପରକୁ ଗଲା । ସେତେବେଳକୁ ତା'ର ପଞ୍ଝାରେ କୋକିଶିଆଳୀ । ସେ କହୁଥାଏ "ଆ କୋକିଶିଆଳୀ, କହ ଆମେ ବୁଢା ବାପା ପେଚାର ଚର୍ବି ଖାଇବାକୁ ଆସିଛୁ ।"

କୋକିଶିଆଳୀ କହିଲା "ଆମେ ବୁଢା ବାପାର ଚର୍ବି ଖାଇବାକୁ ଆସିଛୁ ।"

ବୁଢାବାପା ପେଚା ଠିକ୍ ସେହି ସମୟରେ କୋକଶିଆଳୀକୁ ଛାଡିଦେଲା । ସେ ସିଧା ଯାଇ ସମୁଦ୍ରରେ ପଡିଲା । ପ୍ରଥମେ ଯେତେବେଳେ ସେ ଭାସୁଥିଲା, ସେ ଖାଲି କାନ୍ଦୁଥିଲା । ତା ପରେ ସେ କହିଲା- "ହେ ମୋ ଦାନ୍ତ ପଥର ହୋଇଯା, ସମୁଦ୍ରର ପଥର ହୋଇଯା । ହେ ମୋ ଜିଭ, ପତ୍ର ହୋଇଯା, ସମୁଦ୍ରର ପତ୍ର ହୋଇଯା, ହେ ମୋ ମସ୍ତିଷ୍କ କାଦୁଅ ହୋଇ ଯା, ସମୁଦ୍ରର କାଦୁଅ ହୋଇ ଯା ।"

ମାଇ ସଲ୍ ମାଛଟିଏ ଏକଥା ଶୁଣିଲା । ସେ ପାଣି ଉପରକୁ ଡେଇଁଲା । ସେ ପଚାରିଲା- "କୋକିଶିଆଳୀ ତୁ କାହିଁକି କାନ୍ଦୁଛୁ ?"

କୋକିଶିଆଳୀ କହିଲା- "ଆଲୋ ମୋ ଭଉଣୀ ସିଲ୍, ମୁଁ କାନ୍ଦୁ ନାହିଁ । ମୋ ବାପା ମା'ଙ୍କୁ ବାହା ହେଲା ବେଳେ ଯେଉଁ ସଙ୍ଗୀତ ବୋଲା ହୋଇଥିଲା, ମୁଁ ତାକୁ ବୋଲୁଛି । ହେ ସିଲ୍, ତମର ସଂଖ୍ୟା କେତେ ମୋତେ କହ । ଆକାଶକୁ ଅନା । ଆକଶରେ ଯେଉଁ ତାରା ସବୁ ଦେଖା ଯାଉଛନ୍ତି, ସେମାନେ ମୋ ଭାଇ । ତମ ସଂଖ୍ୟା କଣ ତାଙ୍କ ଠାରୁ ବେଶି ହେବ ?"

ସିଲ କହିଲା "ବହୁତ ବେଶି ।"

ସିଲ୍‌ଟି ପାଣିରେ ବୁଡିଗଲା । ପୁଣି ପାଣି ଉପରକୁ ଆସିଲା । ତା ପଛେ ପଛେ ବହୁତ ସିଲ୍ ପାଣିରେ ଭାସିଲେ । ସେମାନେ ତାର ସାଙ୍ଗ ସାଥୀ ବଂଧୁ ବାନ୍ଧବ୍ । ପୁରା ସମୁଦ୍ରଟା ସିଲ୍ ଦ୍ୱାରା ଆବରଣ ହୋଇ କଳା ଦେଖାଗଲା ।

କୋକିଶିଆଳୀ ଗଣିବାକୁ ଆରମ୍ଭ କଲା ।

"ଏକ ଦୁଇ ସେ ଗଣିଲା ତା ପରେ କହିଲା- 'ତୁମେ ଚାଲି ଯାଅ ।' ତା ପଛେ ପଛେ ତୁମ୍ଭେମାନେ ଚାଲି ଆସ । ତାପରେ ପୁଣି ଗଣିଲା 'ତିନି ଚାରି' ତାପରେ କହିଲା 'ତୁମେମାନେ ଚାଲିଯାଅ କଛକୁ ପଛ ଅନ୍ୟମାନେ ଚାଲିଆସ ।"

ତାପରେ ସେ ସିଲ୍ ମାନଙ୍କ ଉପରକୁ ଉଠିଗଲା । ଗଣିଲା ବେଳେ ସିଲମାଛ ଉପରକୁ ଡେଇଁ ପଡୁଥାଏ ।

"ତୁମେ କହିଁକି ସମସ୍ତଙ୍କୁ ଗଣୁନାହଁ" ସିଲ ମାନେ ପଚାରିଲେ । "ମୁଁ ଫେରିଲା ବେଳକୁ ଅନ୍ୟମାନଙ୍କୁ ଗଣିବି ।" ଗଣି ଗଣି ସେ ସମୁଦ୍ର କୂଳରେ ପହଞ୍ଚିଗଲା । ତାପରେ ସେ କୂଳକୁ ଡେଇଁ ପଡିଲା ।

ତାପରେ ସେ ଚିତ୍କାରକଲା- "ସିଲମାନେ, ତୁମେମାନେ ମୋ ଜୀବନ ରଖିଛ । ତୁମେମାନେ କେତେ ଘନିଷ୍ଠ ଏକଥା ତମଠୁଁ ଜାଣିଲି । ମୋ ପାଦ ଯେପରି ଚଂଚଳ ଠିକ ତାର ବିପରିତ ତାର ବୁଦ୍ଧି । ତାହା ଧିର ଓ ମନ୍ଥର ।"

ସିଲ୍‌ମାନେ ଚତ୍କାର କଲେ- "ମିଛୁଆ, ତୁ ଆମକୁ ବିଦ୍ରୁପ କରିବାକୁ କିପରି ସାହାସ କରୁଛୁ ? କୃତଘ୍ନ। ଅସ୍ୱାଭାବିକ ଭାବରେ ତୁ ତୋର ମୃତ୍ୟୁବରଣ କରିବୁ।"

କୋକିଶିଆଳୀ ଉତ୍ତର ଦେଲା- "ନା ତା ଅସମ୍ଭବ।"

କୋକିଶିଆଳୀ ଖୁବ୍ ଜୋର୍‌ରେ ଦୌଡ଼ିବାକୁ ଲାଗିଲା। ବହୁତ ବାଟ ଗଲାପରେ ଦଣ୍ଡିକିରୀ ମାଛଟିଏ ପହଁରୁଥିବାର ସେ ଦେଖିଲା। ସେ ପଚାରିଲା- "କେଉଁଠି ତୁ ଯାଉଛୁ ?"

"ଘରକୁ, ଆଉ ତୁ କୋକିଶିଆଳୀ ?" ଦଣ୍ଡିକିରୀ ଉତ୍ତର ଦେଲା।

"ମୁଁ ବି ସେଇ ଦିଗକୁ ଯାଉଛି। ଆ ସାଥୀ ହୋଇ ଯିବା ସେମାନେ" ଚାଲିଲେ। କୋକିଶିଆଳୀ ଦୌଡ଼ି ଦୌଡ଼ି ଯାଉଥାଏ। ଦଣ୍ଡିକିରୀ ପହଁରି ପହଁରି ଯାଉଥାଏ। ପ୍ରତି ନଦୀ ବାଙ୍କରେ ଦଣ୍ଡିକିରୀ ଆସୁଛି କି-ନାହିଁ ଜାଣିବା ପାଇଁ କୋକୀ ଦଣ୍ଡିକିରୀକୁ ଡାକେ ଆଉ ଦଣ୍ଡିକିରୀ ଉତ୍ତର ଦିଏ।

ଆସୁ ଆସୁ କୋକିଶିଆଳୀ ଗୋଟିଏ ଜାଗାରେ ପହଞ୍ଚିଗଲା। ସେଠି ବୁଢ଼ୀଟିଏ ଚେରି କୋଳି ଶୁଖାଇ ଥିଲା। କୋକୀଟି ସେଠି ନେପେଟାଇ କୋଳି ଖାଇବାରେ ଲାଗିଲା। ଖାଉ ଖାଉ ସେ ଏତେ କୋଳି ଖାଇ ଦେଲା ଯେ ତାର ପେଟ ପୂରିଗଲା। ଆଉ ଗୋଟିଏ କୋଳିବି ସେ ଖାଇ ପାରିଲା ନାହିଁ। ସେଇଟି ସେ ନିଜକୁ ଲମ୍ବାଇ ଦେଲା। ଶେଷକୁ ତାର ନିଦ ଆସିଗଲା।

କୋକିଶିଆଳୀ ତା କୋଳି ପାଖରେ ପଡ଼ିଥବା ଦେଖି ବୁଢ଼ୀଟି ଘରକୁ ଗଲା। ସେ ସେଠୁ ଗୋଟିଏ ଛୁରିଆଣିଲା। ଫେରି ଆସି ଦେଖିଲା- କୋକିଶିଆଳୀ ସେମିତି ଶୋଇଛି। ବୁଢ଼ୀଟି ତାକୁ ସେଇଠି ହତ୍ୟା କଲା। ତାର ଛାଲ ଉତ୍ତାରି ଖରାରେ ଶୁଖାଇ ଦେଲା। ସେ ଶୁଖିଯିବାରୁ ସେଥିରେ ଟୋପିଟିଏ କଲା। ସେ ଟୋପିଟି ପିନ୍ଧି କୁକୁରମାନଙ୍କୁ ଖାଇବାକୁ ଦେବାକୁ ଗଲା। ଶେଷରେ କେକିଶିଆଳୀ ବହୁ ଧୂର୍ତ୍ତ କିନ୍ତୁ ଶେଷକୁ ସାବଧାନ ନହେବାରୁ ତାର ମୃତ୍ୟୁ ହେଲା। ତା ପୁଣି ଅତି ଦୟନୀୟ ଭାବରେ।



# କାଉ ଓ ଓଧ

## (ଓରୋଚି ରୂପକଥା)

କାଉଟିଏ ଦିନେ ଓଧକୁ ଦେଖିବାକୁ ଆସିଲା । ଓଧଟି କାଉକୁ ସ୍ୱାଗତ ଜଣାଇଲା । ଯାହା ଘରେ ଅଛି ତାକୁ ଦେଇ କାଉକୁ ସମ୍ବର୍ଦ୍ଧନା ଜଣାଇବାକୁ ସେ ଚାହିଁଲା । ସେ ଗୋଟିଏ ପାତ୍ରରେ ପାଣି ଭର୍ତ୍ତିକଲା । ତାକୁ ଝୁଲାଇ ଦେଲା । ତା ତଳେ ନିଆଁ ଜାଳିଲା । ପାଣି ଯେମିତି ଉଷୁମ ହୋଇଛି, ନିଜେ ତା ଭିତରକୁ ଝାମ୍ପ ମାରିଲା । କାଉଟି ସେଠି ଠିଆ ହୋଇ ଦେଖୁଥାଏ । କୁଆଡ଼େ ତାର ସତ୍କାରକ ଗଲା । ସେ ଜାଣି ପାରିଲା ନାହିଁ ।

ହଠାତ୍ ଓଧଟି ପାଣିରୁ ବାହାରି ଆସିଲା । ସେ ଏଥର ଏକୁଟିଆ ଆସିନାହିଁ । ସାଥୀରେ ଗୋଟିଏ ମାଛ ଧରି ଆସିଛି । ତାକୁ ପାତ୍ରରେ ରଖିଲା । କାଉ ପାଖରେ ଆସି ବସିଲା । ମାଛଟି ରାଂଧା ହୋଇ ଖାଇବାପାଇଁ ପ୍ରସ୍ତୁତ ହୋଇଗଲା । କାଉ ଓ ଓଧ ଉଭୟେ ଆନନ୍ଦରେ ତାକୁ ଖାଇଲେ ।

ପରଦିନ ଓଧକୁ ସମ୍ବର୍ଦ୍ଧନାରେ ଯିବା ପାଇଁ କାଉଟି ଓଧକୁ ନିମନ୍ତ୍ରଣ କଲା । ଯେମିତି ଓଧ ଆସି ପହଞ୍ଚିଛି, କାଉ ଗୋଟିଏ ପାତ୍ରରେ ପାଣି ଭର୍ତ୍ତିକଲା । ନିଆଁ ଉପରେ ଝୁଲାଇ ଦେଲା । ପାଣି ଫୁଟିଲା । ଓଧ ଯାହା କରିଥିଲା, ସେଇମିତି କରିବା ପାଇଁ ସେ ପାଣି ଭିତରକୁ ଡେଇଁ ପଡ଼ିଲା । ସେ ସେଥିରେ ଜୀବନ୍ତ ଶିଝିଗଲା ।

ଓଧ ଓ କାଉ ବଂଧୁତ୍ୱ ସେଠି ଶେଷ ।



# ଛୋଟ ଚଢ଼େଇ

## (ନେନେଟ୍‌ସ ରୂପକଥା)

ଚଢ଼େଇଟି ଛୋଟ। କିନ୍ତୁ ତାର ଯୁବା ବୟସ। ଦେଖିବାକୁ ଖୁବ୍ ସୁନ୍ଦର। ଗୋଟିଏ ଡେଙ୍ଗା ଗଛର ଶେଷ ଡ଼ାଳରେ ସେ ବସିଥିଲା।

ଗଛ ମୂଳରେ ଗାତଟିଏ। ସେ ଗାତରୁ ଛୋଟ ମୂଷାଟିଏ ବାହାରି ଆସିଲା। ସେଇଟି ଦେଖିବାକୁ ବେଶ୍ ହୃଷ୍ଟପୃଷ୍ଟ। କୌତୁକିଆ। ବେକରେ ତାର ଗୋଟିଏ ଧାତୁର ମାଳି। ମାଳିର ଓଜନରେ ସେ ମୁଣ୍ଡକୁ ଟେକିପାରୁ ନଥିଲା। ସେ ଏପଟ ସେପଟ କିଛି ସମୟ ହେଲା। ତାପରେ ଗାତ ଭିତରେ ପଶିଗଲା। ଛୋଟ ମୂଷାଟିକୁ ଦେଖି ଚଢେଇଟି ମୁଗ୍ଧ। ଚଢେଇଟିର ମନ ତାଠାରେ ଲାଗିଗଲା। ସେ ଆଉ କିଛି କରିବାକୁ ଇଚ୍ଛା କଲା ନାହିଁ। ସିଧା ସେ ତାର ବସାକୁ ଫେରି ଆସିଲା। ଗୋଡ ଦୁଇଟି ଜାକି ମୁଣ୍ଡକୁ ନୁଆଁଇ ସେ ବସାରେ ବସି ରହିଲା।

ମା' ତାର ବସାକୁ ଫେରିଲା। ପୁଅର ଏ ଅବସ୍ଥା ଦେଖି ବ୍ୟତିବ୍ୟସ୍ତ। ତା ପାଖକୁ ଗଲା। ତାକୁ କଅଁଳେଇ ପଚାରିଲା- "ଦେହ ତାର ଭଲ ନାହିଁ ? ତୋର କ'ଣ ହୋଇଛି ? ତୁ ଏପରି ମନ ଦୁଃଖ କାହିଁକି କରୁଛୁ ?"

ଚଢେଇଟି ମା' କଥାରେ ଆଶ୍ୱାସନା ପାଇଲା। ସେ କହିଲା- "ମୁଁ ଏଇନେ ଗୋଟିଏ ଛୋଟ ମୂଷା ଦେଖିଲି। ସେ ଦେଖିବାକୁ ବେଶ ସୁନ୍ଦର। କୌତୁକିଆ। ତା ବିନା ମୁଁ ରହିପାରିବି ନାହିଁ। ତେଣୁ ମୁଁ ତାକୁ ବିବାହ କରିବାକୁ ଚାହେଁ।"

ମା' ଚଢେଇଟି ପୁଅ କଥାଶୁଣି ତାଜୁବ। ସେ କହିଲା- "ତୁ ଏପରି ଅସମ୍ଭବ କଥା କିପରି କହୁଛୁ ? ମୂଷାମାନେ ଗାତରେ ରହନ୍ତି। ଏମିତିକି

ଶୀତଦିନେ ତାଙ୍କ ଗାତ ମୁଁହରେ ବରଫ ଜମାଟ ବାନ୍ଧିଦିଏ। ତଥାପି ବି ସେମାନେ ଗାତରୁ ବାହାରନ୍ତି ନାହିଁ। ଆମ କଥା ଦୋଷରା। ବଞ୍ଚିବା ପାଇଁ ଆମର ପବନ ଓ ଆଲୋକ ଦରକାର। ଆମେ ଗାତରେ ରହିପାରିବା ନାହିଁ। ଶୀତଦିନର ଥଣ୍ଡା ପବନ ବାଜିଲେ ଆମ ପୁଚ୍ଛ·ବରଫ ପାଲଟି ଯିବ। ତେଣୁ ତାଙ୍କ ସାଥୀରେ ତୋର ରହିବାର ପ୍ରଶ୍ନ ଉଠୁନି। ଏପରି ସ୍ଥଳରେ ତୁ ତାକୁ ବାହା ହେବୁ କିପରି ?

ଛୋଟ ଚଡେଇଟି ମା' କଥାରେ କାନ ଦେଲା ନାହିଁ। ବାରମ୍ବାର ମୂଷା ଛୁଆକୁ ବାହା ହେବାକୁ ଅଳିକଲା। ସେଥିରେ ତା ମା'ର କାନ ତାବ୍‌ଦା ହୋଇଗଲା।

ବାପା ଚଡେଇଟି ଦିନଯାକ ଶୀକାରକୁ ଯାଇଥିଲା। ସଂଧ୍ୟାରେ ବସାକୁ ଫେରିଲା। ମା' ତାକୁ କହିଲା- "ପୁଅ ବାହା ହେବାକୁ ଜିଦ ଧରିଛି। ଆମେ ତାକୁ ବାହା କରିଦେବା।"

ବାପା ଚଡେଇଟି କିଛି ସମୟ ଗଭୀର ଭାବରେ ଚିନ୍ତା କଲା। ତା ପରେ ସେ ପଚାରିଲା- "ଆମେ ତାକୁ କାହାକୁ ବାହା କରିବା ?"

"ଗୋଟିଏ ଛୋଟ ମୂଷାକୁ। ସେ ଆଜି ତାକୁ ଦେଖିଛି। ତା ଛଡା ଅନ୍ୟ କାହାକୁ ବାହା ହେବାକୁ ସେ ରାଜି ନୁହେଁ।"

"ମୁଁ ବି ସେ ମୂଷା ଛୁଆକୁ ଦେଖିଛି। ପ୍ରକୃତରେ ଦେଖିବାକୁ ସେ ଭାରି ସୁନ୍ଦର। କୌତୁକିଆ। ଆକର୍ଷଣୀୟ। କିନ୍ତୁ ଆମ ପୁଅ ତାକୁ କେମିତି ବାହାହେବ ?"

·ସେମାନେ ଏକାଠି ବସି ବହୁ ସମୟଧରି ବିଚାର କଲେ। ସେମାନେ ଦେଖିଲେ ପୁଅ ତା ନିଜ ଇଚ୍ଛାରେ ବାହା ହେବାକୁ ଚାହୁଁଚି। ମନା କଲେ ହୁଏତ ମାନିବ ନାହିଁ। ତେଣୁ ଏ ପ୍ରସ୍ତାବରେ ବାଧା ଦେବାଟା ଉଚିତ୍ ହେବ ନାହିଁ। ସେଥିପାଇଁ ପୁଅ କଥାରେ ରାଜି ହେଇ ବାହା ହେବା ପାଇଁ ନିଷ୍ପତ୍ତି

ନେଲେ। ଅନ୍ୟ କାହାକୁ ମଧ୍ୟସ୍ଥ ସେମାନେ କଲେ ନାହିଁ। ମା' ତାର ନିଜେ ବିବାହ ପ୍ରସ୍ତାବ ନେଇ ଗଲା। ଉଡ଼ିଉଡ଼ି ମୂଷା ଗାତ ପାଖକୁ ଗଲା। ତାପରେ ସିଧା ମୂଷାଗାତ ଭିତରେ ପଶିଲା। ତାକୁ ଦେଖି ଛୋଟ ମୂଷାର ବାପା ମା ଆଶ୍ଚର୍ଯ୍ୟ। ସେମାନେ ତାଙ୍କ ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ। ସେମାନେ ଚଢ଼େଇଟିକୁ ସାଦର ଅଭ୍ୟର୍ଥନା ଜଣାଇ ବସାଇଲେ। କିଛି ସମୟ କଥା ହେବା ପରେ ମୂଷାଟି କହିଲା- "ତୁମେ କେବେ ଆମ ଘରକୁ ଆସିନାହଁ। ଆଜି ଆସିଛି। ଏ ବିଷୟରେ ପଚାରିଲେ କଣ କିଛି ଖରାପ ଭାବିବ ନାହିଁ ତ ?"

ମା' ଚଢ଼େଇଟି କହିଲା- "ମୁଁ ତମ ଝିଅ ମୂଷା ବିଷୟରେ ପ୍ରସ୍ତାବ ପକାଇବାକୁ ଆସିଛି। ସେ ଘରେ ଅଛି ନା ବାହାରକୁ ଯାଇଛି।"

ବାପା ମୂଷାଟି କହିଲା- "ସେ ଘରେ ଅଛି।" ତାପରେ ଶେଷକୁ ସେ କହିଲା- "ତୁମେ ଯେଉଁ ପ୍ରସ୍ତାବ ନେଇ ଏଠାକୁ ଆସିଛ, ସେ କଥା ମୁଁ ଜାଣି ପାରୁଛି। କିନ୍ତୁ ମୋର କହିବାର କଥା-ଗ୍ରୀଷ୍ମ ଋତୁ ଚାଲିଗଲେ ଶରତ ଆସିବ। ସେତେବେଳେ ତୁମେମାନେ ଦରିଆ ପାର ହୋଇ ଗ୍ରୀଷ୍ମ ଦେଶମାନଙ୍କୁ ଚାଲିଯିବ। କିନ୍ତୁ ମୋ ଝିଅ ତ ଉଡ଼ି ପାରିବ ନାହିଁ। ତମମାନଙ୍କ ସାଥୀରେ ସେ କିମିତି ଯିବ ?"

"ତା'ର ଗୋଟିଏ ବାଟ ଅଛି। ଆମେ ଆମର ପୁଅକୁ ତମମାନଙ୍କ ପାଖରେ ଏବର୍ଷ ଛାଡି ଚାଲିଯିବୁ।" ମା' ଚଢ଼େଇଟି କହିଲା।

"ସେ ତ ଆମର ଏକମାତ୍ର ଝିଅ। ଶରତ ଋତୁ ତମ ପୁଅ ଆମଘରେ ରହିଲେ, ଆମେ ବାହାଘର କରିବୁ।"

ବିବାହ କଥାଟା ପକ୍କା ହୋଇଗଲା। ଚଢ଼େଇଟି ତା ବସାକୁ ଫେରି ଆସିଲା।

ବାପା ଚଢ଼େଇଟି ତ ଅପେକ୍ଷା କରିଥିଲା। ମା ଚଢ଼େଇଟି ଆସିବା ଦେଖି ବସା ମୁହଁକୁ ଗଲା। ସେଠି ପଚାରିଲା- "କଣ ହେଲା ?"

ମା' ଚଢ଼େଇ କହିଲା- "ଆମ ପୁଅ ଶୀତଦିନେ ତାଙ୍କ ଘରେ ରହିବ, ତାହାହେଲେ ସେମାନେ ବାହାଘର କରିବେ।"

ବାପା ଚଢ଼େଇଟି ମୁଣ୍ଡ ନୁଆଁଇ ଅତି ଗମ୍ଭୀର ଭାବରେ କହିଲା- "ତାହା ହିଁ ହେଉ।"

କିଛିଦିନ ପରେ ବେଶ୍ ଜାକଜମକରେ ଛୋଟ ଚଢ଼େଇଟିର ଛୋଟ ମୂଷା ସାଥୀରେ ବାହାଘର ହୋଇଗଲା। ଏଥିରେ ସବୁ ଚଢ଼େଇ ଆଉ ସବୁ ମୂଷା ଯୋଗ ଦେଇଥିଲେ।

ଆସ୍ତେ ଆସ୍ତେ ଶରତ ଋତୁ ଆସିଗଲା। ଆକାଶ ଏବେ ମେଘାଚ୍ଛନ୍ନ। କଳା ବାଦଲ ଘୋଟି ଆସିଲାଣି। ଚଢ଼େଇମାନେ ସଦଳବଳେ ଦକ୍ଷିଣକୁ ଯିବାପାଇଁ ପ୍ରସ୍ତୁତ ହୋଇଗଲେଣି। ଚଢ଼େଇଟି ବାପା ମା' ମଧ୍ୟ ସେମାନଙ୍କ ସାଥୀରେ ଯିବାପାଇଁ ସମସ୍ତ ଆୟୋଜନ କରି ପୁଅ ପାଖକୁ ଆସିଲେ। ବାପା ଚଢ଼େଇଟି ପୁଅକୁ କହିଲା- "ତୋ ମା ଓ ମୁଁ ବହୁଦୂରକୁ ଚାଲିଯାଉଛୁ। ତୁ ଶୀତଦିନ ଯାକ ଏଠାରେ ଆମ ଅନୁପସ୍ଥିତିରେ ରହିବୁ। ବ୍ୟସ୍ତ ହେବୁ ନାହିଁ। ବରଫ ତରଳିବା ମାତ୍ରେ ଆମେ ଏଠାରେ ଆସି ପହଞ୍ଚିଯିବୁ।"

ଏତକ କହିସାରି ବାପା ଚଢ଼େଇଟି ତା ସ୍ତ୍ରୀ ସହିତ ଅନ୍ୟ ପକ୍ଷୀମାନଙ୍କ ମେଳରେ ଉଡ଼ି ଚାଲିଗଲା।

ବାପା ମା ଗଲାପରେ ଛୋଟ ଚଢ଼େଇଟିର କିଛି ଆଉ କରିବାର ନଥିଲା। ତେଣୁ ସେ ମୂଷା ଗାତ ଭିତରେ ପଶିଲା। ସେଠାରେ ଦୁଇଟି ମାସ ଅନ୍ଧାର ଭିତରେ ରହିଗଲା। ବାହାରେ ତୁଷାର ଝଡ଼। ପବନ ସୁସୁ ହୋଇ ଗର୍ଜୁଥାଏ। ଭାରି ଥଣ୍ଡା। ଅସମ୍ଭବ ରକମର ହେମାଳ।

ଚଢ଼େଇଟି ତା ସ୍ତ୍ରୀ ମୂଷାକୁ କହିଲା- "ଘର ଭିତରେ ଭାରି ଅନ୍ଧାର। ଧୂଆଁଳିଆ। ସେ ଏହାକୁ ଆଉ ସହି ପାରୁନାହିଁ। କବାଟ ଟିକିଏ ଖୋଲିଦେ। ଧୂଆଁକିଛି ବାହାରକୁ ଚାଲିଯାଉ। ମୁଁ ଦିନର ଆଲୋକ ଟିକିଏ ଦେଖେ।"

ସ୍ୱାମୀର ଅନୁରୋଧ ଛୋଟ ମୂଷାଟି ରଖିଲା। ଦୁଆର ଟିକିଏ

ଖୋଲିଦେଲା । ଚଢ଼େଇଟି ଯେମିତି ବାହାରକୁ ଚାହିଁଛି, ତାର ପର ସବୁ ଦୁଆର ମୁହଁରେ ଲାଗି ବରଫ ପାଲଟିଗଲା । ଏଇ ମଉକା ଦେଖି ଛୋଟ ମୂଷାର ଭାଇ ତା ଉପରକୁ ଡେଇଁ ପଡ଼ି ତାକୁ ଖାଇ ଦେଲା ।

କିଛିଦିନ ପରେ ବସନ୍ତ ଋତୁ ଆସିବାରୁ, ବରଫ ସବୁ ତରଳିବାକୁ ଲାଗିଲା । ବାପା ମୂଷାଟି ଗାତ ଭିତରୁ ବାହାରକୁ ଆସି ପ୍ରଥମେ ଆକାଶକୁ ତାପରେ ତଳକୁ ଚାହିଁଲା । ଏତିକିବେଳେ ପଡ଼ିଆ ପଟୁ ବାପ ଚଢ଼େଇଟି ଡେଇଁ ଡେଇଁ ତା ଆଡ଼କୁ ଆସି ପଚାରିଲା- "କିଓ ବୁଢ଼ା ମୂଷା । ମୋ ପୁଅ କିପରି ଅଛି ? ମୋ ପୁଅ କାହିଁ କେଉଁଠି ଦେଖାଯାଉ ନାହିଁ ।"

ବାପା ମୂଷାଟି ଦୀର୍ଘନିଶ୍ୱାସଟିଏ ପକାଇଲା । ତାପରେ କହିଲା- ତମ ପୁଅର ପୁଚ୍ଛ ଦୁଆର ମୁହଁରେ ମୁହଁରେ ବରଫ ପାଲଟିଗଲା । ସେ ମରିଗଲା ।

ଏକଥା ଶୁଣି ଅଧୈର୍ଯ୍ୟ ଭାବରେ ବାପ ଚଢ଼େଇଟି କାନ୍ଦିଲା- ହେ, ମୋ ପୁଅ, ବିଚାରା । ମୋତେ କେତେ ଦୁଃଖ ଦେଇ ତୁ ଗଲୁ । କିଛି ସମୟ ପରେ ସେ ନିଜେ ଧୈର୍ଯ୍ୟ ନେଲା । ତାପରେ ପଚାରିଲା- "ତୁମେ ଯଦି କହୁଚ ସେ ମୃତ, ତାହା ହେଲେ ତୁମେ ତାର କବର କେଉଁଠି ଦେଇଛ, ଦେଖାଇ ଦିଅ ।"

ବାପ ମୂଷାଟି କ'ଣ ଉତ୍ତର ଦେବ, ଜାଣି ପାରିଲା ନାହିଁ । ତେଣୁ ଚୁପ୍ ରହିଲା ।

ବାପା ପକ୍ଷୀଟି ଚିତ୍କାର କଲା- "ତୁମେ ମୋ ପ୍ରଶ୍ନର ଉତ୍ତର ଦେବାକୁ କୁଣ୍ଠିତ ? ତାହାହେଲେ ମୋ ପୁଅର ମୃତ୍ୟୁ ପାଇଁ ତୁମେମାନେ ଦାୟୀ । ଆମକୁ ତା'ହେଲେ ପ୍ରତିଶୋଧ ନେବାକୁ ହେବ । ଏହାର ସମାଧାନ କେବଳ ଯୁଦ୍ଧରେ ହିଁ ହେବ । ମୁଁ ଯାଉଛି । ସୈନ୍ୟ ସବୁ ସଂଗ୍ରହ କରି ଆସିବି । ଏ ପର୍ଯ୍ୟନ୍ତ ତୁ ଭାବିଥିଲୁ- ମୁଁ ଭଦ୍ର । କିନ୍ତୁ ପରିସ୍ଥିତିରେ ମୁଁ ଯେ କେତେ ଭୟଙ୍କର, ବଦମାସ ଓ ଖରାପ ତାହା ଏବେ ଅଙ୍ଗେ ଲିଭାଇବୁ ।" ତାପରେ ସେ ଉଡ଼ି ଚାଲିଗଲା ।

ବାପା ମୂଷାଟି ନିଜକୁ କହିଲା- "ମୁଁ ଘଟଣାଟାକୁ ଏପରି ସହଜ ଭାବରେ ନେଲେ ହେବନାହିଁ । ମୋତେ ମଧ୍ୟ ସୈନ୍ୟ ସଂଗ୍ରହ କରିବାକୁ ହେବ । ପାଲଟା ଜବାବ ଦେବା ଛଡ଼ା ଆମର ଅନ୍ୟ ଉପାୟ ନାହିଁ ।" ସୈନ୍ୟ ସଂଗ୍ରହ କରିବାକୁ ସେ ବି ବାହାରି ଗଲା ।

ତା'ର କିଛି ସମୟପରେ ମା' ମୂଷାଟି ପଦାକୁ ଆସିଲା । ଦ୍ୱାର ମୁହଁରେ ଠିଆହୋଇ ଦକ୍ଷିଣକୁ ଅନାଇଲା । ସମସ୍ତ ଆକାଶ କଳା ଦେଖାଯାଉଛି । ସେ ଭାବିଲା-ପ୍ରବଳ ତୋଫାନ ହେବ । କିନ୍ତୁ ପୁଣି ସେ ଅନାଇ ଦେଖିଲା-ଏ ତୋଫାନର ବାଦଲ ନୁହେଁ । ଏହା ଏକ ପକ୍ଷୀ ଦଳ । ଆଗରେ ବାପ ଚଡେଇ । ତେବେ ଏ ଯେ ବାପା ଚଡେଇର ସୈନ୍ୟ ଦଳ, ଏଥିରେ ତାର ସଂଦେହ ରହିଲା ନାହିଁ ।

ସେ ଉତ୍ତରକୁ ଅନାଇଲା । ମୂଷା ପଲ ମାଡି ଆସୁଛନ୍ତି । ତାର ସ୍ୱାମୀ ତାଙ୍କ ଆଗରେ । ନେତୃତ୍ୱ ନେଇ ତାଙ୍କୁ ଆଣୁଛି ।

ଦୁଇ ସୈନ୍ୟ ବାହାରି ଏକାଠି ହେବାମାତ୍ରେ ଯୁଦ୍ଧ ଆରମ୍ଭ ହୋଇଗଲା । ଏ ଯୁଦ୍ଧ ବହୁ ଦିନ ଧରି ଚାଲିଲା । କିନ୍ତୁ କେହି କିତି ପାରିଲେ ନାହିଁ । ଦିନେ ହଠାତ ପେଚା ତାର ତୀକ୍ଷ୍ଣ ପଞ୍ଝାରେ ବାପା ମୂଷାକୁ ଉଠାଇ ନେଲା । ସେ ତାକୁ କୁଆଡେ କାହିଁ କେତେ ଦୂରକୁ ନେଇଗଲା । ତା ପରେ ଉଭୟ ପଟର ବୃହଦକାୟ ସୈନ୍ୟଦଳ ଆପେ ଆପେ ଯୁଦ୍ଧ ତାଙ୍କର ବନ୍ଦ କରିଦେଲେ । ତାପରେ ସେମାନେ ଆଉ ଯୁଦ୍ଧ କରିନାହାନ୍ତି ।



# ଡାମରା କାଉ ଓ ହରିଣ ଚର୍ବି

## (ଟୁକ୍‌ଚି ରୂପକଥା)

ହରିଣ ଚର୍ବି ଖଣ୍ଡେ ପଡିଥିଲା । ତାହା ଦେଖିବାକୁ ବେଶ୍ ବଡ । ସେଇବାଟେ ଡାମରା କାଉଟିଏ ଉଡି ଉଡି ଯାଉଥିଲା । ସେ ଚର୍ବିକୁ ଯେମିତି ଦେଖିଛି, ସେ ଖୁବ ଖୁସି ହୋଇଗଲା । ସେ ଆଗକୁ ଆଉ ଗଲା ନାହିଁ । ଚର୍ବି ପାଖରେ ଯାଇ ବସିଲା । ତାପରେ ହୋ ହୋ ହୋଇ ସେ ହସିଲା । କହିଲା- "ହେ ବାଣୁଆ, ତୁ କେବଳ ଏଡେ ବଡ ଚର୍ବି ଫିଙ୍ଗି ଦେଇପାରୁ । ସେଥିପାଇଁ ତୋତେ ଅଶେଷ ଧନ୍ୟବାଦ ।"

ହେଳା ନ କରି ସେ ଚର୍ବିକୁ ଧରି ଗଛ ଉପରକୁ ଉଠିଗଲା । ଦୁଇ ଗୋଡରେ ଚର୍ବିକୁ ମାଡି ବସିଲା । ଖାଇବ ବୋଲି ଥଣ୍ଟରେ ତାକୁ ଆକ୍ରମଣ କଲା । ଚର୍ବିତ ଅଠାଳିଆ । ସହଜରେ ଛିଣ୍ଡେ ନାହିଁ । ଥଣ୍ଟରେ ଟାଣିଲେ ଲମ୍ବିଯାଏ । ତେଣୁ ସେ ତାକୁ ବାରମ୍ବାର ଥଣ୍ଟରେ ଖୁମ୍ପୁଥାଏ । ସେତିକିବେଳେ ସେ ବଡ ପାଟିରେ କହୁଥାଏ- "ହେ ଚର୍ବି, ତୁ କେଡେ ସୁଆଦିଆ ହୋଇଛୁ । ହେ ବଣୁଆ, ଏଡେ ସୁଆଦିଆ ଚର୍ବି ତୁ ପକାଇଦେଲୁ । ତୋତେ ମୁଁ କିପରି ଧନ୍ୟବାଦ ଦେବି ଜାଣି ପାରୁ ନାହିଁ ।"

ସେଇବାଟେ କୋକିଶିଆଳୀଟିଏ ଯାଉଥିଲା । ସେ କାଉର କଥା ଶୁଣି ଅଟକି ଗଲା । ଉପରକୁ ଚାହିଁଲା । କାଉ ଧରିଥିବା ଚର୍ବିକୁ ଦେଖିଲା । ପାଟିରୁ ତାର ଲାଳ ବୋହିଲା । ଚର୍ବିଟିକୁ କିପରି ଖାଇବ, ସେଇକଥା ସେ ଚିନ୍ତାକଲା । ତାପରେ ନେପଟାଇ ନେପଟାଇ କାଉ ବସିଥିବା ଗଛ ମୂଳକୁ ଗଲା । କାଉ ତ ବି ଚର୍ବି ଖାଇବାରେ ବ୍ୟସ୍ତ । ଏକଥା ସେ ଜାଣି ପାରିଲା ନାହିଁ । କୋକିଶିଆଳୀଟି ହୋ କିନା ପାଟିଟିଏ କରି ଦେଲା । କାଉପାଇଁ ଏ ଶବ୍ଦ ସଂପୂର୍ଣ୍ଣ ଅପ୍ରତ୍ୟାଶିତ । ଆକସ୍ମିକ ତେଣୁ କାଉଟି ଚମକି ପଡିଲା ।

ଭାରସାମ୍ୟ ସେ ରଖି ପାରିଲା ନାହିଁ । ସେ ତଳେ ପଡିଗଲା । ମୁଣ୍ଡ ତାର ସିଧା ଯାଇ ବରଫ ଭିତରେ ପଶିଗଲା ଗୋଡରେ ଚାପି ଧରିଥିବା ଚର୍ବିଖଣ୍ଡକ ତଳେ ପଡିଗଲା । କୋକିଶିଆଳୀ ତ ଏ ସୁଯୋଗ ଉଣ୍ଚୁଥିଲା । ମୁହୂର୍ତ୍ତିଏ ଅପେକ୍ଷା ନକରି ଚର୍ବିକୁ ଧରି ପଳାଇଗଲା ।

ଡାମରାକାଉଟି ବରଫରୁ ଉଠି ଝାଡିଝୁଡି ହୋଇ ବସିଲା । ଚମକିପଡି ସେ ମେ ଗଛରୁ ପଡିଲା, ସେଥିପାଇଁ ତାକୁ ଭାରି ଲାଜ ମାଡିଲା । ତାର ତ ଲୋକ ଲଜ୍ଜା ଅଛି । କିଏ ପଡିବା ଦେଖିଛି, ସେକଥା ଜାଣିବା ପାଇଁ ସେ ଚାରିଆଡକୁ ଅନାଇଲା ସେତେବେଳକୁ କୋକିଶିଆଳୀ ଅଦୃଶ୍ୟ ହୋଇଯାଇଥିଲା । କେହି କେଉଁଠି ଥିବାର ସେ ଦେଖିପାରିଲା ନାହିଁ । ସେ ଯେ ଲୋକ ଲଜ୍ଜାରୁ ରକ୍ଷା ପାଇ ଯାଇଛି, ସେଥିପାଇଁ ସେ ଆଶ୍ୱସ୍ତ । ଆନନ୍ଦିତ । ତାପରେ ତାର ଚର୍ବି କଥା ମନକୁ ଆସିଲା । ଚାରିପଟକୁ ଆଖି ପକାଇଲା । ଚର୍ବିର ନାଁ ଗନ୍ଧ ବି ନାହିଁ ତାକୁ ତା ଆଶ୍ଚର୍ଯ୍ୟ ଲାଗିଲା । ତାପରେ ଚର୍ବିକୁ ସେ ଡାକ ପକାଇଲା । କହିଲା- "ହେ ଚର୍ବି, ତୁ କେଉଁଠି ଅଛୁ ? କୁଆଡେ ଗଲୁ ?"

ଯେତେ ଡାକିଲେ, ଉତ୍ତର ଆସିଲା ନାହିଁ । ବାରମ୍ବାର ସେ ଡାକୁଥିଲା । "ଆ, ଆ ପାଖକୁ ଆ ।"

ଚର୍ବିକୁ ଖୋଜି ଖୋଜି କାଉଟି ହାଲିଆ ହୋଇ ପଡିଲା । ସେ ଦେଖିଲା- ଖୋଜିବାରେ ତାର ଆଉ କିଛି ମୂଲ୍ୟ ନାହିଁ । ତେଣୁ ଡାମରା କାଉଟି ପୁଣି ଆକାଶକୁ ଉଡିଗଲା । ଗଲାବେଳେ ସେ ନିଜକୁ କହୁଥିଲା- "ଆଶ୍ଚର୍ଯ୍ୟ କଥା । ଚର୍ବିଖଣ୍ଡକ ବି ମୋ ଠାରୁ ପଳାଇଗଲା !"



# ନୀଳବର୍ଣ୍ଣ ଶୃଗାଳ ଓ ଠେକୁଆ

## (ଚୁକ୍‌ଚି ରୂପକଥା)

ବଣ ମେଣ୍ଢାଟିକୁ ଗଧିଆଟିଏ ମାରି ପକାଇ ଚାଲିଗଲା । ଠେକୁଆଟି ସେ ମଲା ମେଣ୍ଢା ଦେଖି ଭାରି ଖୁସି ହୋଇଗଲା । ତାକୁ ସେ ମାଂସ କଲା । ସେ ମାଂସକୁ ନେଇ ରାନ୍ଧି ବସିଲା । ସେ ବାଟେ ନୀଳ ବର୍ଣ୍ଣ ଶୃଗାଳଟିଏ ଯାଉଥିଲା । ଠେକୁଆକୁ ଦେଖି ସେ କହିଲା- ହଇରେ ଠେକୁଆ, କଣ କରୁଛୁ ?

ଠେକୁଆ କହିଲା-ଭ୍ଭାଇ, ଏଠି ମୁଁ ବଣ ମେଣ୍ଢାଟିଏ ରାନ୍ଧୁଛି ।"

"ତୁ କେମିତି ବଣ ମେଣ୍ଢାକୁ ମାରିଲୁ ?" ନୀଳବର୍ଣ୍ଣ ଶୃଗାଳ ପଚାରିଲା ।

"ଓଃ ! ଏ ତ ଭାରି ସହଜ କଥା । ମୁଁ ଲୁଚି ଲୁଚି ବଣ ମେଣ୍ଢା ପାଖକୁ ଗଲି । ହୋ କିନା ପାଟି କରିଦେଲି । ସେ ଛାନିଆ ହୋଇ ପଡିଗଲା । ସାଥି ସାଥି ତାର ପ୍ରାଣବାୟୁ ଚାଲିଗଲା ।" ଠେକୁଆ କହିଲା ।

"ମୁଁ କି ଗୋଟିଏ ବଣ ମେଣ୍ଢା ମାରିବାକୁ ଚାହୁଁଛି । ମୁଁ ତାକୁ କିପରି ମାରିବି ? ମୋତେ ଟିକିଏ ବତେଇ ଦେ ।" ଶୃଗାଳର ମିନତୀ ଥିଲା ।

"ଓଃ ! ତୁ ତ ଚୁପ୍ ଚୁପ୍ ହୋଇଯିବୁ । ଯେତେବେଳେ ଏକଦମ୍ ତା ପାଖରେ ପହଞ୍ଚିଯିବୁ, ଖୁବ ଜୋରରେ ପାଟି କରିବୁ । ସେତିକି ହିଁ ଯଥେଷ୍ଟ ।" ଠେକୁଆଟି ଶୃଗାଳକୁ ବୁଝାଇ ଦେଲା ।

"ଠିକ୍ ଅଛି, ମୁଁ ଏଥର ମେଣ୍ଢାଟିଏ ଶୀକାର କରିବାକୁ ଚାଲିଲି । ନୀଳ ବର୍ଣ୍ଣ ଶୃଗାଳଟି ଏତକ କହି ଡିଁଆ ମାରିଲା । କାଛି ବାଟ ଗଲାପରେ ନୀଳ ବର୍ଣ୍ଣ ଶୃଗାଳଟି ଗୋଟିଏ ବଣ ମେଣ୍ଢା ଦେଖିଲା । ସେ ନେପେଟାଇ ନେପେଟାଇ ତା ପାଖକୁ ଗଲା । ଯେମିତି ତା ପାଖରେ ପହଞ୍ଚିଛି, ଖୁବ

ଜୋରରେ ପାଟିଟିଏ କଲା । ମେଣ୍ଢାଟି ପଡି ମରିବା ପରିବର୍ତ୍ତେ ଖୁବ୍ ଜୋରରେ ଦୌଡି ପଳାଇଲା ।

ନୀଳ ବର୍ଣ୍ଣ ଶୃଗାଳର ଉଦ୍ୟମ ପାଣି ଫାଟିଗଲା । କଣ ତାର ତ୍ରୁଟି ରହିଲା, ସେ ଜାଣି ପାରିଲା ନାହିଁ । କଥାଟା ଠିକ୍ କରି ବୁଝିବାକୁ ସେ ପୁଣି ଠେକୁଆ ପାଖକୁ ଫେରିଲା । ତାକୁ ଦେଖୁ ଦେଖୁ ଠେକୁଆ ପଚାରିଲା- "କଣ ମେଣ୍ଢା ମାରିଲୁ ?"

ନୀଳ ବର୍ଣ୍ଣ ଶୃଗାଳ କହିଲା- "ନା ମୁଁ ମେଣ୍ଢା ପାଖକୁ ଲୁଚି ଲୁଚି ଗଲି, ହୋ କିନା ଖୁବ୍ ଜୋରରେ ଚିତ୍କାର କଲି । କିନ୍ତୁ ମେଣ୍ଢାଟି ଦୌଡି ପଳାଇଲା ।"

ଠେକୁଆ ପୁଣି ପଚାରିଲା- "ସେ ଦୌଡି ପଳାଇଲାବେଳେ ତୁ କଣ ତାକୁ ପୁଣି ଡାକିଲୁ ?"

"ନା"

"ତୁ କେଡେ ବୋକା । ଗୋଟିଏ ବଡ ମେଣ୍ଢାଟି ଏକା ତୁ ମାରିପାରୁ ନାହୁଁ । ତୁ ଯଦି ପଛରୁ ରହ ରହ ବୋଲି ହଲ୍ଲା କରିଥାନ୍ତୁ, ସେ ଦୌଡିବା ଅବସ୍ଥାରେ ପଡି ମରିଯାଇଥାନ୍ତା ।"

ଠେକୁଆ କଥା ଶୁଣି ନୀଳ ବର୍ଣ୍ଣ ଶୃଗାଳ ଛାନିଆ । ସେ ବୁଲି ପଡି ତା ପାଖରୁ ଡିଆଁ ମାରି ପଳାଇଲା । ଗଲାବେଳେ କହିଲା- "ଠେକୁଆ, ଯଦି ତୋ କଥା ଶୁଣିବି, ମୁଁ ବି ମରିଯିବି ।"



## ଡାମରା କାଉ ଓ ପେଚା

(ଏସ୍କିମୋ ରୂପକଥା)

ବିଶ୍ୱାସ କର ବା ନାହିଁ, ଏକଦା କାଉ ଓ ପେଚାର ରଂଗ ବରଫ ଭଳି ଧଳା ଥିଲା । ଥରେ ସେମାନଙ୍କର ତୁନ୍ଦ୍ରାରେ ଦେଖାହେଲା । ସେଠି ଡ଼ାମରା କାଉ କହିଲା- ପେଚା, ଆମ ରଂଗ ବରଫ ଭଳି ଧଳା ଓ ପରିଷ୍କାର ।

ସାମାନ୍ୟ ମଇଳା ଲାଗିଲେ, ବାରି ହୋଇ ପଡେ । ଅସନା ଲାଗେ । ପରିଷ୍କାର ନ କଲେ ରକ୍ଷା ନାହିଁ । ଏଭଳି ରଙ୍ଗକୁ ବଜାୟ୍ ରଖିବା ପାଇଁ ଭାରି କଷ୍ଟ ହେଉଛି । ତୋ କଥା ମୁଁ ଜାଣେ ନାହିଁ, ଏହା ମୋ ପ୍ରତି ବିରକ୍ତ, ଅସହ୍ୟ ଓ ବ୍ୟସ୍ତର କାରଣ। ଆମେ ଯଦି ଆମକୁ ଅନ୍ୟ ରଙ୍ଗରେ ରଙ୍ଗାଇ ଦିଅନ୍ତେ, କଷ୍ଟ ଆଉ ହୁଅନ୍ତା ନାହିଁ ।

ପେଚା କହିଲା- "ମୋ ବିବେଚନାରେ ତୁ ଯାହା କହୁଛୁ, ଠିକ୍ । ଆ ଆମେ ଚେଷ୍ଟା କରିବା । ଫଳ କଣ ହେଉଛି, ଦେଖିବା ।"

ପେଚା କଥା ଶୁଣି ଡାମରା କାଉଟି ଭାରି ଖୁସି ! ସେ ଚିତ୍କାର କଲା- "ବଢିଆ କଥା କହୁଛୁ। ଏଥର ଆମ କାମ ଆମେ ଆରମ୍ଭ କରିବା ।" ସେ ପୁଣି କହିଲା- "ତୁ ଆଗେ ମୋତେ ରଙ୍ଗ କର । ତାପରେ ମୁଁ ତୋତେ ରଙ୍ଗ କରିବି ।"

ପେଚା କହିଲା- "ନାଁ ନାଁ, ଏକଥା କେମିତି ହେବ ?" ପ୍ରଥମରେ ତୁ କଥାଟା ଉଠାଇଛୁ। ତେଣୁ ତୋତେ ଆରମ୍ଭ କରିବାକୁ ହେବ ।"

ଠିକ୍ ଅଛି । ତାହା ହିଁ ହେଉ । ଡାମରା କାଉ ରାଜି ହେଲା । ତାପରେ ଡାମରା ଦୀପରୁ ଅଧା ପୋଡ଼ା ଚର୍ବି ଓ କଳା ପୋଛି ବାହାର କଲା । ନିଜର ପୁଚ୍ଛରୁ ବଡ଼ ପରଟିଏ ଆଣିଲା । ସେଇ ପର ସାହାଯ୍ୟରେ ପେଚାକୁ ସେ ରଙ୍ଗ କରିବାରେ ଲାଗିଲା । ଏଥିପାଇଁ ସେ ବେଶ ଯତ୍ନ ନେଉଥିଲା । ଧୂସର ରଙ୍ଗର ବିଭିନ୍ନ ଆକାରର ଟୋପା ସେ ପେଚା ଦେହରେ ଦେବାକୁ ଲାଗିଲା ବଡ଼ ତାର ପକ୍ଷରେ। ସାନ ଟୋପା ତା ଛାତିରେ ଓ ପିଠିରେ ଦେଲା । ଯେତେବେଳେ ରଙ୍ଗ ଦେବା ତାର ସରିଆସିଲା, ସେ ଚିତ୍କାର କଲା- "ପେଚା, ତୋତେ ମୁଁ କେଡେ ସୁନ୍ଦର କରିଦେଲି। ତୁ ତୋତେ ଦେଖି ଆତ୍ମ ସନ୍ତୋଷ ଅନୁଭବ କର ।"

ପେଚାଟି ନିଜକୁ ଦେଖିଲା, ପୂର୍ଣ୍ଣ ମାତ୍ର ସନ୍ତୋଷ ସେ ଅନୁଭବ କରି

ପାରିଲା ନାହିଁ । ଶେଷକୁ ସେ ତାର ଆନନ୍ଦ ଭାବ ପ୍ରକାଶ କରି କହିଲା- "ହଁ ଟୋପା ଗୁଡିକ କମନୀୟ ହୋଇଛି । ଏଥର ମୁଁ ତୋତେ ରଙ୍ଗ କରେ । ମୋ ରଙ୍ଗ କରିବା ପରେ ତୁ ଦେଖିବୁ, ତୁ କେଡେ ସୁନ୍ଦର ଦେଖାଯିବୁ । ଏପରିକି ତୁ ତୋତେ ଚିହ୍ନି ପାରିବୁ ନାହିଁ ।"

ପେଚାଟି ତାକୁ ସୁନ୍ଦର ଭାବରେ ରଙ୍ଗ କରୁ, ସେ କଥା ତ ଡାମରା କାଉଟି ଚାହେଁ । ତେଣୁ ତାକୁ ପୂର୍ଣ୍ଣ ସହଯୋଗ କରିବାପାଇଁ ସେ ସୂର୍ଯ୍ୟ ଆଡକୁ ମୁହଁ କରି ଠିଆ ହେଲା । ଆଖିକୁ ଅର୍ଦ୍ଧ ମୁଦ୍ରିତ କରିଦେଲା । ସେ ଏପରି ଧିରସ୍ଥିର ଭାବରେ ଠିଆହେଲା ଯେ ସତେ ଯେମିତି ସେ ମାଟି ସହିତ ମିଶି ବରଫ ପାଲଟି ଯାଇଛି ।

ପେଚାଟି ବହୁତ ଉତ୍ସାହ ସହ ରଙ୍ଗ କରିବାକୁ ଆରମ୍ଭ କଲା । ରଙ୍ଗ କରିବାକୁ ତାକୁ କିଛି ସମୟ ଲାଗିବ । ରଙ୍ଗ କରିସାରିଲା ପରେ ସେ ଡାମରା କାଉଟି ନିଜେ ଦେଖିଲା । ତା ଆଖିରେ ତା ତୁଳନାରେ ଡାମରା କାଉଟି ବେଶ୍ ଉଜ୍ୱଳ । ସୁନ୍ଦର । ଏଥିରେ ତାର ଇର୍ଷାହେଲା । ସେ ଡାମରା କାଉ ପାଖକୁ ଖୁବ୍ ଲାଗିଆସିଲା । ତା ପାଖରେ ଥିବା ରଙ୍ଗକୁ ସେ ଡାମରା କାଉ ଉପରେ ଢାଳି ଦେଲା । ସେଠୁ ଉଡ଼ି ପଳାଇଲା । ଡାମରା କାଉଟି ତାର ଆଖି ମକଚି ମେଲା କଲା । ସେ ଦେଖିଲା-ସେ ପୁରା କଳା । ସେ ଚିତ୍କାର କଲା- "ହେ ଧାଗୁଆ ପଞ୍ଝା ପେଚା । ହେ ତୀକ୍ଷ୍ଣ ନଜରିଆ ପେଚା । ତୁ କଣ କଲୁ ? ମୋତେ ତୁ କଳା କରିଦେଲୁ । ଏହି କଳା ହାଣ୍ଡି କଳା ଠାରୁ ଆହୁରି କଳା । ଗାଢ଼ ରାତି ଠାରୁ ଆହୁରି ବି କଳା ।"

ଏଇଠାରୁ ଗପ ଶେଷ ହେଲା । ସେଇଦିନୁ ଆଉ କୌମସି ଡ଼ାମରା କାଉ କଳା ନଥିବାର ଜଣାନାହିଁ ।



# ଛୋଟ ମୂଷା
## (ଖାନ୍ତି ରୂପକଥା)

ଏକଦା ଛୋଟ ମୂଷାଟିଏ ଥିଲା ।

ବସନ୍ତ ଋତୁ ଆରମ୍ଭରେ ଲୋକେ ମାଛ ଧରିବାକୁ ଡ଼ଙ୍ଗାରେ ଯାଆନ୍ତି । ଆମ ମୂଷାଟି ମାଛ ମାରିବାକୁ ଯିବା ପାଇଁ ସ୍ଥିର କଲା । ତେଣୁ ସେ ଡ଼ଙ୍ଗା ପରିବର୍ତ୍ତେ ଗୋଟିଏ ତୁମ୍ବୀରେ ମାଛ ମାରି ବାହାରିଲା । ସାଥିରେ ଆହୁଲା ମାରିବା ପାଇଁ ଛୋଟ କରଣୀଟିଏ ନେଇଗଲା । ବାରମ୍ବାର ଆହୁଲା ମାରିଲା ବେଳେ ସେ ଗାଉଥାଏ-

"ଡ଼ଙ୍ଗା ବଦଳି ତୁମ୍ବି ମୋର ନାଆ ବାଃ ବାଃ ବାଃ
ଆହୁଲା ବଦଳି କରଣୀଟି ମୋର ସାହା ଆଃ ଆଃ ଆଃ"

ତୁମ୍ବୀଟି ତାର ଭାସି ଭାସି ଗୋଟିଏ ଗାଁ ପାଖରେ ପହଞ୍ଚିଲା । ସେଠି ପଞ୍ଚେ ପିଲା ନଇ କୂଳରେ ଥିଲେ । ସେମାନେ ତୁମ୍ବୀରେ ମୂଷା ଯାଉଥିବାର ଦେଖି ଚିତ୍କାର କଲେ- "ଛୋଟ ମୂଷାଟି ରହିଯା
ବଡିଆ ଜିନିଷ ଖାଇଯା ।"

ମୂଷାଟି ଉତ୍ତର ଦେଲା- "କଣ ଦେବ ରହିଲେ
କହ ମୋତେ ପହିଲେ ।

ପିଲାଏ ସାଥୀ ସାଥୀ କହିଲେ- "ମାଛ ଗୋଟିଏ ପାଇବୁ
ମନ ବୋଧରେ ଖାଇବୁ ।"

ମୂଷାଟି କହିଲା- "ମୋର ତାହା ଲୋଡ଼ା ନାହିଁ
ଆଗକୁ ଚାଲିଲି ମୁହିଁ ।"

ତାପରେ ସେ ପୁଣି କରଣୀରେ ଆହୁଲା ମାରିଲା ବେଳେ ଗାଇଲା ।

ସେଠାରେ ପିଲା ଗୁଡ଼ିଏ ନଈ କୂଳରେ ଠିଆ ହୋଇଥିଲେ । ସେମାନେ ଛୋଟ ମୂଷାଟିକୁ ତୁମ୍ବିରେ ଯାଉଥିବାର ଦେଖି ଚିତ୍କାର କଲେ-

"ଛୋଟ ମୂଷାଟି ରହିଯା
ବଢ଼ିଆ ଜିନିଷ ଖାଇଯା ।"

ମୂଷାଟି ସାଙ୍ଗେ ସାଙ୍ଗେ ଉତ୍ତର ଦେଲା-

"କଣ ଦେବ ରହିଲେ
କହ ମୋତେ ପହିଲେ ।"

ପିଲାଏ କହିଲେ- "ବତକ ମାଂସ ପାଇବୁ
ମନ ବୋଧରେ ଖାଇବୁ ।"

ମୂଷାଟି କହିଲା- "ତାହା ମୋର ଲୋଡା ନାହିଁ
ଆଗକୁ ଚାଲିଲି ମୁହିଁ ।"

ପୁଣି ଆହୁଲା ମାରି ମାରି ସେ ତାର ତୁମ୍ବିକୁ ନେଇ ଚାଲିଲା । ଗଲା ବେଳେ ଗାଉଥିଲା-

"ଡ଼ଙ୍ଗା ବଦଳି ତୁମ୍ବି ମୋର ନାଆ ବାଃ ବାଃ ବାଃ
ଆହୁଲା ବଦଳି କରଣି ମୋର ସାହା ।" ଆଃ ଆଃ

ଆଃ ବେଶୀ ବାଟ ଯାଇଛି କି କମ୍ ବାଟ ଯାଇଛି କେହି କହି ପାରିବେ ନାହିଁ । କିନ୍ତୁ ସେତୃତୀୟ ଗାଁ ପାଖରେ ପହଞ୍ଚି ଗଲା । ନଈ କୂଳରେ ପିଲାମାନେ ଜମା ହୋଇଥିଲେ । ସେମାନେ ମୂଷାକୁ ଦେଖି ଡାକିଲେ-

"ଛୋଟ ମୂଷାଟି ରହିଯା
ବଢ଼ିଆ ଜିନିଷ ଖାଇଯା ।"

ମୂଷାଟି ତାଙ୍କୁ ଉତ୍ତର ଦେଲା- "କଣ ଦେବ ରହିଲେ
କହ ମୋତେ ପହିଲେ ।"

ପିଲାଏ କହିଲେ- "ମାଛ ମଞ୍ଜି ପାଇବୁ
ମନ ବୋଧରେ ଖାଇବୁ ।"

ମାଛ ମଂଜି ନାଁ ଶୁଣି ମୂଷାର ପାଟିରୁ ପାଣି ବୋହିଲା।

ସେ ପଚାରିଲା- "କେଉଁ ମାଛର ମଞ୍ଜି
ଖାଇବି ମୁହିଁ ମଞ୍ଜି।"

ପିଲାଏ କହିଲେ- "ସ୍ତରଜେନ ମାଛର ମଞ୍ଜି
ଦେବୁ ଆରେ ତୋତେ ଖଞ୍ଜି।"

"ଉଁ ଉଁ ଉଁ ମୋତେ ସ୍ତରଜେନ ମାଛର ମଞ୍ଜି ଭଲ ଲାଗେ। ଉଁ ଉଁ ଉଁ ମୁଁ ଯାଉଛି।" ତାପରେ ମୂଷାଟି ତାର ଛୋଟ ଡ଼ଙ୍ଗାକୁ କୂଳକୁ ଆଣିଲା। ତାକୁ ଖଟାଇ ଦେଲା। ପିଲାଙ୍କ ପାଖକୁ ଧାଇଁ ଆସିଲା।

ପିଲାମାନେ ତା ଆଗରେ ଥାଳିଏ ସ୍ତରଜେନ ମାଛର ମଞ୍ଜି ଥୋଇ ଦେଲେ। ମୂଷାଟି ଖୁବ୍‌ ଆନନ୍ଦରେ ସେସବୁ ତରବର ହୋଇ ଖାଇବାରେ ଲାଗିଲା। ଖାଇ ଖାଇ ପେଟଟି ତାର ଡୋଲ ହୋଇଗଲା।

ଏତିକି ବେଳେ ପିଲାମାନେ ପାଟି କଲେ- "ହେ ମୂଷା, ତୋର ଡ଼ଙ୍ଗା ଓ ଆହୁଲା ଭାସିଗଲା।"

ଏକଥା ମୂଷାଟି ଯେମିତି ଶୁଣିଛି, ସେ ତାର ଖାଇବା ଜାଗାରୁ ଡେଇଁ ପଡ଼ିଲା। ନଈ କୂଳକୁ ଧାଇଁଲା। ପେଟେ ଖାଇ ଦେଇଥିବାରୁ ଚଳିବାକୁ ସେ ଅକ୍ଷମ। ତେଣୁ ଟଳିଟଳି ସେ ଆସୁଥିଲା। ଗୋଡ଼ ଖସିବାରୁ ପଡ଼ିଗଲା। ପେଟ ତାର ଫାଟିଗଲା। ମୂଷାଟି ଚିତ୍କାର କଲା- "ଓଃ ଓଃ ଓଃ ପିଲାଏ ମୋତେ ଟିକିଏ ସାହାଯ୍ୟ କର। ମୋ ପାଇଁ ଛୁଞ୍ଚି ଆଉ ସରୁ ସୂତା ଓ ମହମ ଲଗା ସୂତା ଆଣ।"

ପିଲାଏ ଦୌଡ଼ିକରି ଗଲେ। ଛୁଞ୍ଚି ସୂତା ଆଣି ପେଟ ତାର ସିଲାଇ କରି ଦେଲେ। ତାପରେ ତାକୁ ନେଇ ତା ଡଙ୍ଗାରେ ବସାଇ ଦେଲେ।

ମୂଷାଟି ତାର ଡଙ୍ଗା ବାହିଲା ସତ, ମନରେ ତାର ଅଶେଷ ଦୁଃଖ। ସେ ଆଉ ଗୀତ ଗାଇ ପାରିଲା ନାହିଁ। କିନ୍ତୁ ତା ନାଆ ଓ ଆହୁଲା ତା ପାଇଁ

ଗୀତ ଗାଇଲେ । ନାଆଟା ହେଉଥିଲା ଆଃ ଆଃ, ଆହୁଲା ହେଉଥିଲା ବାଃ ବାଃ ବାଃ ।



## ପୋହଳା ମାଛ ଓ ଭାଲୁ

(ଇଭେଙ୍କ ରୂପକଥା)

ନଈ ପାଖକୁ ଲାଗି ଖାଲି ଜାଗା ଥିଲେ, ସେଥିରେ ପିଛିଲା ପାଣି ପଶିଯାଏ । ପାଣିର ବାହାରିବାକୁ ବାଟ ନଥିବାରୁ ସେଠି ପାଣି ସ୍ଥିର, ଗତି ହୀନ । ଏଇମିତି ଗୋଟିଏ ଆବଦ୍ଧ ଜଳାଶୟରେ ପୋହଳା ମାଛଟିଏ ଶୋଇ ଖରା ଖାଉଥିଲା । କେତେବେଳେ ତାର ଆଖି ବୁଜି ହୋଇ ଯାଇଛି, ସେ ଜାଣି ନାହିଁ । ତାକୁ ଟିକିଏ ଛାଇ ନିଦ ବି ଲାଗିଗଲା ।

ଏତିକିବେଳେ ଭାଲୁଟିକୁ ଶୋଷ ହେଲା । ସେ ପାଣି ପିଇବାକୁ ଜଙ୍ଗଲରୁ ଧୀରେ ଧୀରେ ଶବ୍ଦ କରି ନଈ କୂଳକୁ ଆସିଲା । ଭାଲୁଟି ପୋହଳା ମାଛକୁ ଦେଖିଲା । ତାର ନଖଯୁକ୍ତ ପାଦରେ ପାଣି ସହିତ ସେ ପୋହଳାକୁ ଉପରକୁ ଛାଟି ଦେଲା । ପାଣି ସହିତ ମାଛଟି ଯାଇ କୂଳରେ ପଡ଼ିଲା । ଭାଲୁଟି ଚିତ୍କାର କଲା- "ପୋହଳା ମୁଁ ତୋତେ ପାଇଛି । ଏଇନେ ତୋତେ ଖାଇବି ।" ତାପରେ ସେ ପୋହଳା ମାଛଟିକୁ ଖାଇବା ପାଇଁ ତାର ବଡ଼ ପାଟିଟା ମେଲା କଲା ।

ପୋହଳା ଦେଖିଲା- ତା'ର ଅବସ୍ଥା ଖରାପ ଆଡ଼କୁ ଯାଉଛି । ବୁଦ୍ଧି ନ ଖଟାଇଲେ ତାର ଜୀବନ ରକ୍ଷା ଅସମ୍ଭବ । ଭାଲୁ ତାକୁ ଖାଇଦେବ । ତେଣୁ ସେ କହିଲା- ଭାଲୁ ତୁ ଟିକିଏ ଅପେକ୍ଷା କର । ମୁଁ ତ ପାଣିକୁ ଏଠୁ ଯାଇ ପାରିବି ନାହିଁ । ତେଣୁ ମୋତେ ଖାଇବାରେ ତୋର କିଛି ଅସୁବିଧା ନାହିଁ । ତା ପୂର୍ବରୁ ଆମ ଭିତରେ କିଏ ବଳୁଆ, ସେଇଟା ପରୀକ୍ଷା କରି ଦେଖିବାଟା ଉଚିତ୍

ହେବ । ମୁଁ ତ ପାଣିରେ ରହେ । ତେଣୁ କିଛି ସମୟ ଶୁଖିଲାରେ ରହି ବଞ୍ଚିବା ମୋ ପକ୍ଷେ ଅସମ୍ଭବ । ସେହିପରି ତୁ ସ୍ଥଳଚର । ପାଣିରେ ବୁଡ଼ି ରହି ବଞ୍ଚିବା ତୋ ପକ୍ଷେ ଅସମ୍ଭବ । ମୁଁ ତୋ ପରିବର୍ତ୍ତେ ଶୁଖିଲାରେ ରହିବି । ତୁ ମୋ ପରିବର୍ତ୍ତେ ପାଣିରେ ବୁଡ଼ିବୁ । ଆମ ଭିତରେ ଯେ ବେଶି ସମୟ ଏ ପରିସ୍ଥିତିରେ ବଞ୍ଚି ପାରିବ, ସେ ହିଁ ବଳୁଆ ବୋଲି ବିବେଚିତ ହେବ ।

ଭାଲୁ ଦେଖିଲା- ତାକୁ ଭୋକ ନାହିଁ । ସେଥିପାଇଁ ସେ ପୋହଳା ଖାଇବାକୁ ତରତର ନୁହେଁ । ଏଇଟା ଖରାଦିନ । ସୂର୍ଯ୍ୟ କିରଣ ଭାରି ଟାଣ । ତେଣୁ ତାର ପାଣିରେ ବୁଡ଼ିବାର କିଛି ଅସୁବିଧା ନାହିଁ । ତାଛଡ଼ା ତାର ବିଶ୍ୱାସ-ଶୁଖିଲାରେ ପଡ଼ି ପୋହଳା ବଞ୍ଚି ରହିବା ପାଇଁ ଯେତେ ସମୟ ଦରକାର ତାହାଠାରୁ ଯଥେଷ୍ଟ ବେଶି ସମୟ ସେ ଆନନ୍ଦରେ ପାଣିରେ ରହି ପାରିବ । ତେଣୁ ସେ ପୋହଳାର ପ୍ରସ୍ତାବରେ ରାଜି ହୋଇଗଲା । ପୋହଳା ତ ଶୁଖିଲାରେ ପଡ଼ିଛି । ତେଣୁ ସେ ପାଣିରେ ପଶି ବୁଡ଼ିଲା । ସିଧା ନଈର ତଳକୁ ଗଲା । ସେଇଠି ସେ ଶୋଇଲା । ପାଟିରେ ପାଣି ଯେପରି ନ ପଶିବ, ସେଥିପାଇଁ ସେ ନିଶ୍ୱାସ ବନ୍ଦ କଲା । ସେ ବେଶ୍ କିଛି ସମୟ ସେଠି ରହିଲା । ସେ ଆଉ ଅଧିକ ନିଶ୍ୱାସ ରୋକିଲେ ଛାତି ତାର ଫାଟିଯିବା ଭଳି ତାକୁ ଲାଗିଲା, ତେଣୁ ସେ ପଦାକୁ ବାହାରି ଆସିଲା । ନିଶ୍ୱାସ ପୁଣି ନେଲା । ସେ ନିଜକୁ ଝାଡ଼ିଦେଇ ଧୀରେ ଧୀରେ ପୋହଳା ବଞ୍ଚିଛି କି ନାହିଁ ଦେଖିବାକୁ ତା ପାଖକୁ ଆସିଲା । ସେ ଦେଖିଲା, ପୋହଳାଟି ଖାଲି ବଞ୍ଚି ନାହିଁ, ସେହିପରି ସେଇଠି ପଡ଼ି ରହିଛି । ସେ ତ ଆଉ ମୁହୂର୍ତ୍ତଟିଏ ପାଣିରେ ରହି ପାରି ନଥାନ୍ତା । କିନ୍ତୁ ପୋହଳାଟି ଶୁଖିଲାରେ ବେଶ୍ ଭଲରେ ଅଛି ।

ପୋହଳାଟି ଯେ ବଳୁଆ, ଏହା ଏଥିରୁ ପ୍ରମାଣିତ ହେଲା । ସେଥିପାଇଁ ଭାଲୁର ଭାରି ରାଗ । ଯେତେ ଜୋର ତାଠାରେ ଥିଲା ସେ ତାକୁ ଲଗାଇ ତାର ନଖ ଯୁକ୍ତ ପାଦରେ ପୋହଳା ମାଛିଟିକୁ ପାଣି ଆଡ଼କୁ ପୁଣି ଛାଟି ଦେଲା । ତାପରେ ସେ ଜଙ୍ଗଲକୁ ଖୁବ୍ ଜୋରରେ ଧାଇଁଲା । ପଛକୁ ଟିକିଏ ଅନାଇଲା

ନାହିଁ । ପୋହଳାକୁ ଯେଉଁ ଫିଙ୍ଗିଦେଲା ସେଥିରେ ସେ ସିଧା ଯାଇ ପାଣିରେ ପଡ଼ିଲା । ଆଗରୁ ପୋହଳାଟି ପେଣ୍ଡୁଭଳି ଗୋଲ ଥିଲା । ଯେପରି ଭାବରେ ପୋହଳାଟି ପାଣିରେ ମାଡ଼ ଖାଇଲା ସେଥିରେ ସେ ଲମ୍ବା ଓ ଚଟ୍‌କା ହୋଇଗଲା । ସେହିଦିନୁ ସବୁ ପୋହଳା ଲମ୍ବା ଓ ଚଟ୍‌କା, କେହି ପୋହଳା ପେଣ୍ଡୁପରି ଗୋଲ ନୁହନ୍ତି ।



## ବାଘ ଓ ବାଳକ

### (ଉଲ୍‌ଟି ରୂପକଥା)

ବହୁଦିନ ତଳର ଏହି ଘଟଣା ।

ଶିକାରୀଟିଏ ଥିଲା । ତାର ପୁଅଟିଏ । ପୁଅଟିର ଶିକାର କରିବାର ସାମର୍ଥ୍ୟ ଆସିନାହିଁ । କିନ୍ତୁ ବାପ ତାର ତାକୁ ସାଥିରେ ନିଏ । ପୁଅଟି ତା ପାଇଁ ଚା କରେ । ଜାଳ ସଂଗ୍ରହ କରେ ।

ଦିନେ ବାପ ପୁଅ ଶିକାରକୁ ଯାଇଥିଲେ । ରାତି ହୋଇଗଲା । ସେମାନେ ତମ୍ବୁରେ ଶୋଇଲେ । ବାପ ସ୍ୱପ୍ନ ଦେଖିଲା ଯେ ବାଘଟିଏ ତାକୁ ଆସି କହୁଛି- ତୁ ତୋ ପୁଅକୁ ମୋ ପାଖରେ ଚାଡ଼ି ଚାଲିଯା । ଯଦି ନ ଯିବୁ, ମୁଁ ତୋତେ ତୋ ଘରକୁ ଛାଡ଼ିବି ନାହିଁ । ବାପ ପୁଅ ଉଭୟଙ୍କୁ ମାରି ଦେବି ।

ବାପଟି ଉଠି ବସିଲା । ପୁଅଟି ନିଘୋଡ଼ ନିଦରେ ଶୋଇଥାଏ ।

ବାପ ତା ନିଜକୁ କହିଲା- ମୁଁ କ'ଣ କରିବି ? ମୋ ପୁଅର ଜୀବନ ବିନିମୟରେ ମୋ ଜୀବନ ରଖିବି ? ମୁଁ ଯଦି ପୁଅକୁ ବାଘ ପାଖରେ ଛାଡ଼ି ନଯିବି, ବାଘ ଆମ ଉଭୟଙ୍କୁ ମାରିଦେବ । ଏବେ ମୁଁ ଏଇଆ କରିବି । ମୁଁ ଘରକୁ ଯିବି । କିଛି ସମୟ ରହିବି, ପୁଣି ପୁଅ କେମିତି ଅଛି ଦେଖିବାକୁ ଆସିବି ।

ଏହା ସ୍ଥିର କରିସାରିଲା ପରେ ବାପଟି ଘରକୁ ଚାଲିଗଲା । ପୁଅଟି ଜଙ୍ଗଲରେ ସେମିତି ଶୋଇଥାଏ ।

ପୁଅଟି ଶୋଇ ଶୋଇ ଶେଷକୁ ତାର ନିଦ ଭାଙ୍ଗିଲା । ସେ ଚାରି ଆଡ଼କୁ ଅନାଇଲା । ବାପକୁ କେଉଁଠି ଦେଖିଲା ନାହିଁ । ସେ ଭାବିଲା- ବାପ ଶିକାରକୁ ଚାଲିଯାଇଛି । ବାପ କେଉଁଠି ଆଖ ପାଖରେ ଥିବ ବୋଲି ଭାବି ସେ ତାର ପୋଷାକ ପିନ୍ଧି ତମ୍ବୁ ବାହାରକୁ ଆସିଲା । ସେ ଚାରିଆଡ଼କୁ ଅନାଇ ଅନାଇ ଜଙ୍ଗଲରେ ଯାଉଥାଏ, ହଠାତ୍ ସେ ଦେଖିଲା- ବାଘଟିଏ ତା ଆଡ଼କୁ ଧାଇଁ ଆସୁଛି । ସେ ଖୁବ୍ ଛାନିଆ ହୋଇଗଲା । ଆତ୍ମରକ୍ଷା ପାଇଁ ସେ ପାଖ ଗଛରେ ଚଢିଗଲା । ସିଧା ତା ଅଗକୁ ଚାଲିଗଲା । ସେ ଗଛଟି ଖୁବ୍ ବଡ଼ । ତାର ବହୁତ ଡ଼ାହି । ସେସବୁ ଛନ୍ଦା ଛନ୍ଦି ହୋଇ ଅଛନ୍ତି । ପିଲାଟିକୁ ଧରିବ ବୋଲି ବାଘ ବି ତରତର ହୋଇ ସେ ଗଛରେ ଚଢ଼ିଗଲା । ହଠାତ୍ ସେ ଦୁଇଟି ଡ଼ାହି ଭିତରେ ପଶିଗଲା । ଏମିତି ସେ ଚିପି ହୋଇଗଲା ଯେ ଟିକିଏ ହଲ୍‌ଚଲ୍ ବି ହୋଇ ପାରିଲା ନାହିଁ ।

ସଂଧ୍ୟା ହେଲା । ବାପା ବି ଆଇଲା ନାହିଁ । ପିଲାଟି ଗଛ ଅଗରେ ଆରାମରେ ବସିଥିଲା । ସେଇଠି ସେ ଶୋଇପଡ଼ିଲା । ତାକୁ ନିଘୋଡ଼ ନିଦ ହୋଇଗଲା । ସେ ସ୍ୱପ୍ନ ଦେଖିଲା- "ବାଘଟି ଖୁବ୍ କାନ୍ଦୁଛି । କାନ୍ଦିବା ଅବସ୍ଥାରେ ସେ ଶପଥ କରି ତାକୁ କହୁଛି- ମୋତେ ତୁ ଉଦ୍ଧାର କରି ଦେ । ମୁଁ ବହୁତ ଉପହାର ଦେବି ।"

ପିଲାଟିର ନିଦ ଭାଙ୍ଗିଗଲା । ବାଘଟିର ଦୁର୍ଦ୍ଦଶା ଦେଖି ସେ ଦୁଃଖିତ । ତାପରେ ସେ ପାଖ ଗଛ ଅଗକୁ ସେ ଡେଇଁ ପଡ଼ିଲା । ସେହି ଗଛ ଦେଇ ତଳକୁ ଆସିଲା । ସେ ଚା କଲା । ରାନ୍ଧିଲା । ସେଠି ବସି ବାପାଙ୍କୁ ଅପେକ୍ଷା କଲା ।

ସକାଳ ହୋଇଗଲା । ପିଲାଟି କୁରାଢ଼ୀ ନେଇ ଦିନଯାକ ବାଘ ବନ୍ଦୀ ହୋଇଥିବା ଡ଼ାହିକୁ କାଟିଲା । ଶେଷକୁ ଡ଼ାହିଟା ନଇଁ ଆସିଲା । ବାଘଟି ଏବଂ

ମୁକ୍ତ । ତିନୋଟି ଭୟଙ୍କର ଗର୍ଜନ ସେ କଲା । ତାପରେ ଘନ ଜଙ୍ଗଲକୁ ଧାଇଁ ପଳାଇଲା ।

ରାତି ପୁଣି ଆସିଲା, ସେହି ରାତିରେ ପିଲାଟି ଆଉ ଗୋଟିଏ ସ୍ୱପ୍ନ ଦେଖିଲା- ସେଥିରେ ବାଘଟି ତାକୁ କହୁଛି- "ଶୀଘ୍ର ସକାଳୁ ଉଠି ପଡ଼ିବୁ କାଲଟି ପକାଇଦେବୁ । ଚାରିପଟେ ଘେରା ବୁଲାଇ ଦେବୁ ।"

ବାଘ ଯେମିତି କହିଥିଲା, ପିଲାଟି ସେମିତି କଲା । ପରଦିନ ଯାଇ ଜାଲ ଦେଖିଲା । ପ୍ରତି ଜାଲରେ ଗୋଟିଏ ଗୋଟିଏ କୃଷ୍ଣ ପକ୍ଷୀ ପଡ଼ିଥିଲେ । ଏହିପରି କେତେ ଦିନ ଚାଲିଲା । ପିଲାଟି ଜାଲ ପକାଇ ତା କଷ୍ଟ ତୁଳନାରେ ବହୁତ ଲାଭ ପାଇଲା ।

ଏହା ଭିତରେ କିଛିଦିନ ଚାଲିଗଲା । ବାପଟି ଘରେ ଥିଲା । ପୁଅ କେମିତି ଅଛି, ଦେଖିବାକୁ ଆସିଲା । ଜଙ୍ଗଲକୁ ଆସି ସେ ଯେତେବେଳେ ତମ୍ବୁର ପାଖାପାଖି ହୋଇଗଲା, ସେ ଆକାଶରେ ଧୂଆଁ ଗୁରେଇ ଗୁରେଇ ହୋଇ ଉଠୁଥିବାର ଦେଖିଲା । ତା ପୁଅ ଯେ ଜୀବିତ, ଏଥିରୁ ସେ ଜାଣି ପାରିଲା । ସେ ତମ୍ବୁର ଦ୍ୱାର ଖୋଲି ଭିତରକୁ ଗଲା । ପୁଅଟି ସେଠାରେ ବସିଥିଲା । କୃଷ୍ଣ ପକ୍ଷୀର ଚମଡ଼ା ସେଠି ଜମା ହୋଇଥିଲା ।

ବାପଟି ପୁଅକୁ କୁଣ୍ଢାଇ ପକାଇ ଘନ ଘନ ଚୁମ୍ବନ ଦେଲା । ସେମାନେ ବସି ଖାଇଲେ । ତାପରେ ଶୋଇବାକୁ ଗଲେ । ପରଦିନ ସକାଳୁ ଘରକୁ ବାହାରିଲେ । ସାଥିରେ କୃଷ୍ଣ ପକ୍ଷୀର ଚମଡ଼ା ସବୁ ନେଇଗଲେ ।



# ବାଘ ଓ ଶିକାରୀ

## (ନିଭ୍‌ଖ ରୂପକଥା)

ଜଣେ ଲୋକ ଗୋଟିଏ ଗାଁରେ ତା ପୁଅ ସହିତ ରହୁଥିଲା । ସେଇ ଗାଁ ମୁଣ୍ଡରେ ଆଉ ଗୋଟିଏ ଘର । ସେ ଲୋକର ଭଉଣୀ ତା ପୁଅ ସହିତ ରହେ ।

ଦିନେ ଲୋକଟି ଶିକାର କରି ବାହାରିଲା । ସାଥିରେ ସେ ତାର ପୁଅକୁ ନେଇଗଲା । ବାଟରେ ସେମାନେ ଭଉଣୀ ଘରକୁ ଗଲେ । ସେଠୁ ଭଉଣୀର ପୁଅକୁ ନେଲେ । ତିନିଜଣ ଯାକ ଶିକାର ପାଇଁ ଜଙ୍ଗଲକୁ ବାହାରିଲେ ।

ଜଙ୍ଗଲରେ ପହଞ୍ଚି ଗଛର ଡାହି କାଟିଲେ । ତାହା ସାହାଯ୍ୟରେ ତମ୍ବୁଟିଏ ପକାଇଲେ । ସେଠି ସେମାନେ ବସବାସ କରି ରହିଲେ ।

ତମ୍ବୁ ଚାରିପଟେ ସେମାନେ ଜାଲ ପକାନ୍ତି । ବହୁଳ ଭାବରେ ଚଢେଇ ଧରନ୍ତି । ଏମିତିକି ସେଠାରେ ଥିବା ସାବଲ ଚଢ଼େଇ ଭିତରୁ ଗୋଟିଏ ବି ତାଙ୍କ ଜାଲରୁ ବର୍ତ୍ତିଗଲା ନାହିଁ । ସେମାନେ ଏଇମିତି ଭାବରେ ଦେଢମାସ କାଳ ସେଠି କଟାଇ ଦେଲେ ।

ଦିନେ ସକାଳେ ଲୋକଟି ତମ୍ବୁରୁ ପଦାକୁ ଆସିବା ବେଳକୁ ଗୋଟିଏ ବାଘକୁ ଦେଖିଲା । ସେ ତାଙ୍କ ଦ୍ୱାର ମୁଁହରେ ଶୋଇଥିଲା । ସେ ଏପରି ଡରିଗଲା ଯେ ଘରେ ପାଣି ଆଉ ଜାଳ ନଥିଲେ ବି ସେ ପଦାକୁ ଆସିଲା ନାହିଁ । ସେମାନେ ଖାଡାଖାଡା ଉପାସ ସେ ଦିନଟା ରହିଗଲେ । ସେଦିନ ରାତିରେ ସେଇମିତି ଶୋଇଲେ । ସକାଳୁ ଲୋକଟି ଉଠିଲା । ସେ ବାଘକୁ କହିଲା- "ବାଘ, ଆମକୁ ଟିକିଏ ଦୟାକର । ମୁଁ ଓ ମୋ ପୁଅ ଚାଲିଯାଉଛୁ । ମୋ ଭଉଣୀ ପୁଅ ତୋ ପାଖରେ ରହିଲା ।"

ବାଘଟି ଟିକିଏ ଘୁଞ୍ଚିଗଲା । ଲୋକଟି ତା ପୁଅକୁ ଉଠାଇଲା । ଏକଥା ତା ଭଉଣୀ ପୁଅ ଜାଣି ପାରିଲା ନାହିଁ । ବାପା ପୁଅ ଦୁହେଁ ପୋଷାକ

ପିନ୍ଧିଲେ । ଘୁଷୁଡି ଘୁଷୁଡି ତମ୍ବୁରୁ ପଦାକୁ ବାହାରିଲେ । ତାପରେ ସେମାନେ ତାଙ୍କ ଘରକୁ ପଳାଇ ଆସିଲା ।

ଲୋକଟିର ଭଉଣୀର ପୁଅ ସେଠି ରହିଗଲା । ତାର କିଛି ସମୟ କରେ ସେ ଉଠିଲା । ଦ୍ୱାର ବନ୍ଧ ପାଖରେ ବାଘ ଶୋଇଥିବାର ସେ ଦେଖି ତା ଆଖିରୁ ଧାର ଧାର ଲୁହ ବେହିଗଲା । ସେ ତାକୁ ପୋଛିଲା ନାହିଁ । ଖାଲି ବାଘକୁ ଚାହିଁ ରହିଲା ।

ଶେଷକୁ ସେ କହିଲା- "ବାଘ, ଦୟାକରି ଟିକିଏ ଆଡ଼େଇ ଯା । ମୁଁ ଟିକିଏ ବାହାରକୁ ଯାଏ । ମୁଁ ଶପଥ କରୁଛି- ମୁଁ ପଳେଇବି ନାହିଁ । କେବଳ ଧୁଆଧୋଇ ହୋଇ ଆସିବି ।"

ବାଘଟି ଟିକିଏ ଘୁଞ୍ଚିଗଲା । ପିଲାଟି ସେଠୁ ବାହାରକୁ ଆସିଲା । ମୁହଁ ହାତ ଧୋଇଲା । କାଠ କିଛି ଚିରିଲା । ସେସବୁ ତମ୍ବୁ ଭିତରକୁ ଆଣି ଚୁଲି ଲଗାଇଲା ।

ବାଘଟି ପୁଣି ଆସି ଦ୍ୱାର ବଂଧ ପାଖରେ ଶୋଇଲା ।

ପିଲାଟି କିଛି ଖାଦ୍ୟ ରାନ୍ଧିକରି ଖାଇଲା । ତାପରେ ଶୋଇବାକୁ ଗଲା । ସେ ନିଘୋଡ଼ ନିଦରେ ଶୋଇଗଲା । ସେ ସ୍ୱପ୍ନ ଦେଖିଲା- ସେଥିରେ ବାଘଟି ତାକୁ କହୁଥିଲା- "ଏଇ ମୁଲକରେ ଗୋଟିଏ ସିଂହ ଅଛି । ସେ ଥରେ ଗର୍ଜିଲେ ମୁଁ ଏବଂ ମୋ ଜାତିର ବାଘମାନେ ମରି ପଡ଼ନ୍ତି । ଆଉଥରେ ସେ ଗର୍ଜିଲେ, ଆମେ ପୁଣି ବଂଚୁ । ମୁଁ ଯାହା ଦେଖୁଛି, ତୋର ସାହାସ ଅଛି । ମୋର ବିଶ୍ୱାସ-ତୁ କେବଳ ତାକୁ ମାରି ପାରିବୁ । ହେ ପିଲା, ସେଥିପାଇଁ ମୁଁ କାଲି ସକାଳେ ତୋ ପାଖକୁ ଆସିବି ।"

ସକାଳ ହେଲା । ପିଲାଟି ଉଠିଲା । ଖାଦ୍ୟ ରାନ୍ଧିଲା । ତାକୁ ସେ ଖାଇଲା ।

ସେ କହିଲା- "ବାଘ, ମୋତେ ଯଦି ସିଂହକୁ ମାରିବାକୁ ହେବ,

ସେଥିପାଇଁ ମୋତେ ଭଲ ବର୍ଛା କରିବାକୁ ହେବ। ତେଣୁ ମୋତେ ଛାଡ଼। ଟିକିଏ ମୁଁ ବାହାରକୁ ଯାଏ।"

ବାଘଟି ଘୁଞ୍ଚିଗଲା। ପିଲାଟି କୁରାଢ଼ୀ ନେଇ ବାହାରକୁ ଆସିଲା। ସେ ଗୋଟିଏ ଶୁଖିଲା ପାଇନ ଜାତୀୟ ଗଛକୁ କାଟି ଆଠଟି ବର୍ଛା ତିଆରି କଲା। ତା ପାଖରେ ଆଗରୁ ଗୋଟିଏ ଲୁହାର ବର୍ଛା ଥିଲା। ସମୁଦାୟ ତାର ନ'ଟି ବର୍ଛା ହୋଇଗଲା।

ପିଲାଟି କହିଲା- "ବାଘ, ଆ, ଆମ ଲକ୍ଷ୍ୟ ସାଧନ କରିବାକୁ ଯିବା।"

ବାଘଟି ଉଠି ଠିଆ ହେଲା। ପିଲାଟି ଆଠଟି କାଠର ଓ ଅନ୍ୟ ଗୋଟିଏ ଲୁହାର ବର୍ଛା ସଂଗ୍ରହ କରି ତା ପିଠିରେ ବସିଲା।

ବାଘଟି ଖୁବ୍ ଜୋରରେ ଦୌଡ଼ି ଦୌଡ଼ି ଆସି ଗୋଟିଏ ବଡ଼ ପାହାଡ଼ ପାଖରେ ପହଞ୍ଚିଗଲା। ପାହାଡ଼ ପାଦ ଦେଶରେ ଘାସ ପଡ଼ିଆ ଲମ୍ବି ଯାଇଛି। ସେଠି ବହୁତ ବାଘ ଶୋଇଥିଲେ। ପିଲାଟି ବାଘ ପିଠିରୁ ତଳକୁ ଡେଇଁ ପଡ଼ିଲା। ବାଘମାନେ ଉଠି ତାକୁ ମୁଣ୍ଡ ନୁଆଁଇଲେ। ସେ ଚାରିଆଡ଼େ ଆଖି ପକାଇଲା। ପାହାଡ଼ ଉପରେ ଗୋଟିଏ ଗୁମ୍ଫା ଭିତରୁ ଏକ ବିରାଟ ସିଂହ ବାହାରି ଆସିଲା। ସିଂହଟି ଭୟଙ୍କର ଗର୍ଜନ କଲା। ସବୁ ବାଘମାନେ ତଳେ ପଡ଼ିଗଲେ। ସମସ୍ତେ ମୃତ। ତାପରେ ସିଂହ ପୁଣି ଏକ ଭୟଙ୍କର ଗର୍ଜନ କଲା। ବାଘମାନେ ଜୀଇଁ ଉଠିଲେ। ସିଂହଟି ଗୁମ୍ଫା ଭିତରକୁ ଫେରିଗଲା। ପିଲାଟି ତାର ଲୁହା ବର୍ଛାଟି ନେଇ ମାଟିରେ ଭୁଷିଦେଲା। ତାପରେ ସେ ପାହାଡ଼ ଚଢ଼ିବାକୁ ଲାଗିଲା। ସେ ଡେଇଁ ଡେଇଁ ଉପରକୁ ଯାଉଥିଲା। ପ୍ରତିଥର ଡେଇଁସାରି ସେ ଗୋଟିଏ କାଠ ବର୍ଛାକୁ ସେଠି ପୋତି ଦେଉଥିଲା। ଏଇପରି ଭାବରେ ସେ ସାତଟି ବର୍ଛା ପୋତିଦେଲା। ପାହାଡ଼ ଉପରେ ପହଞ୍ଚି ଗୁମ୍ଫା ଭିତରକୁ ଗଲା। ଅଷ୍ଟମ ବର୍ଛା ଦ୍ୱାରା କେଞ୍ଚିବା ଫଳରେ ସିଂହଟି ବାଧ୍ୟ ହୋଇ ପଦାକୁ ଆସିଲା।

ସିଂହଟି ପଳାଇବାକୁ ବସିଲା। ପିଲାଟି ତା ପିଛା ଧରିଲା। ଏମିତିକି

ସିଂହଟି ପାଟି ମେଲା କରିବାକୁ ଫୁରୁସତ ପାଇଲା ନାହିଁ । ସେ ବି ପଛକୁ ଅନାଇଲା ନାହିଁ । ସିଂହଟି ପ୍ରତିଥର ଡେଇଁବା ବେଳେ ପିଲାଟି ତାକୁ କାଠ ବର୍ଚ୍ଛାରେ ଆଘାତ କରେ । ସିଂହଟି କ୍ଷତ ବିକ୍ଷତ ହୋଇଗଲା । ଶେଷକୁ ତାକୁ ସେ ତାର ଲୁହା ବର୍ଚ୍ଛାରେ ମାରିଦେଲା ।

ବାଘମାନେ ଏସବୁ କଥା ଦେଖୁଥିଲେ । ସେମାନେ ଉଠି ଠିଆହେଲେ । ପିଲା ପାଖକୁ ଆସିଲେ । ତାକୁ ମୁଣ୍ଡ ନୁଆଁଇଲେ । ଯେଉଁ ବାଘଟି ତାକୁ ନେଇଥିଲା, ସେ ପୁଣି ତାକୁ ତା ପିଠିରେ ବସାଇ ତମ୍ବୁକୁ ନେଇ ଆସିଲା । ପିଲାଟି ସେଇ ତମ୍ବୁରେ ବସବାସ କଲା । ତାର ଚାରିପଟେ ଜାଲ ପକାଇ ବହୁ ସାବଲ ଚଢ଼େଇ ଧରି ମାରିଲା । ଶେଷକୁ ସେ ଘରକୁ ଫେରି ଆସିଲା । ସାବାଲ ବିକି ଧନୀ ହୋଇଗଲା । ବେଶ୍ ସୁଖରେ ସେ କାଳାତିପାତ କଲା ।



# ଛୋଟ କୋକିଶିଆଳୀ

## (କୋରିୟାକ୍ ରୂପକଥା)

ଗୋଟିଏ ବୁଢ଼ୀଥିଲା । ତାର ଗୋଟିଏ ଯୁବା ପୁଅ । ସେମାନେ ଗୋଟିଏ ଛୋଟ ନୁଆଁଣିଆ ମାଟିର କୁଡ଼ିଆରେ ରହୁଥିଲେ । ଦିନେ ବୁଢ଼ୀଟି କୁଡ଼ିଆରୁ ବାହାରି ଆସି ବାହାରେ ଲୁଗା ସିଲାଇ କରୁଥିଲା । ଏହି ସମୟରେ ଘର ଭିତରେ ଆମ୍ପୁଡ଼ା ଶବ୍ଦ ଶୁଣାଗଲା । କିଏ କଣ କରୁଛି ଜାଣିବା ପାଇଁ ସେ କୁଡ଼ିଆ ଭିତରକୁ ଅନାଇଲା । କିଏ ବା ସେ ଏ କାମ କରନ୍ତା ? ସିଏ ହେଉଛି ଛୋଟ କୋକିଶିଆଳୀଟିଏ । ଘରେ ପଶି ଚୋରି କରି ଖାଦ୍ୟ ଖାଇବା ତାର ଅଭ୍ୟାସ । ତା ଛଡ଼ା ମୂଷା ଏବଂ ଛୋଟ ଛୋଟ ଜୀବଙ୍କୁ ମାରି ଖାଇଦିଏ । ଏଥିରେ ତାର ସୁଖ୍ୟାତି ଅଛି । ବୁଢ଼ୀଟି ଗେହ୍ଲେଇ କରି ତାକୁ କହିଲା- ମୋ ପାଖରେ ପ୍ରଚୁର ଶୁଖୁରି ମାଂସ ଅଛି । ଛୋଟ କୋକିଶିଆଳୀ ଆ, ତୋର ଇଛା ହେଲେ ସେଥିରୁ କିଛି ମାଂସ ଖାଇ ଯାଆ ।

ଛୋଟ କୋକଶିଆଳୀଟି ଖାଇବା ଲୋଭୀ। ମାଂସ ଖାଇବା କଥା ଯେମିତି ସେ ଶୁଣିଛି ସେ ବୁଢ଼ୀ ପାଖକୁ ଧାଇଁ ଆସିଲା। ବୁଢ଼ୀ ତାକୁ ସହଜରେ ଧରି ପକେଇଲା। ତାପରେ ତାକୁ ପାହାରେ ଦେଲା। ଛୋଟ କୋକିଶିଆଳୀଟି ମରିଗଲା। ସେ ମଲା ଜୀବଟିକୁ ଘରକୁ ଘୋଷାଡ଼ି ଆଣିଲା। ଚମଡ଼ା ଉତାରିଲା, ମାଂସ କଲା। ତାକୁ ରାନ୍ଧିଲା। ରନ୍ଧା ସରିବାପରେ ସେ ଚୁଲିକୁ ଲିଭାଇ ଦେଲା। ପୁଣି ଆସି କୁଡ଼ିଆ ବାହାରେ ବସି ସିଲାଇ ଆରମ୍ଭ କଲା।

ବୁଢ଼ୀର ଯୁବା ବୟସର ପୁଅ ଏପର୍ଯ୍ୟନ୍ତ କୁଡ଼ିଆରେ ଶୋଇଥିଲା। ସେ ଉଠିପଡ଼ି ଡ଼ାକିଲା- "ମା' ଆ ଖାଇବା।"

ବୁଢ଼ୀଟି ତା ବସିବା ଜାଗାରେ ଥାଇ କହିଲା- "ତୋତେ ତ ଭୋକ ହୋଇ ନଥିବ। ଏଣୁ ତରତର ହେବା ଦରକାର ନାହିଁ। ଆଉ ଟିକିଏ ପରେ ଖାଇବା।"

କିଛି ସମୟ ଚାଲିଗଲା, ତାପରେ ପୁଅଟି ପୁଣି ଚିତ୍କାର କଲା- "ମା, ଶୀଘ୍ର ଆ, ଖାଇବା। ନଇଲେ କୋକିଶିଆଳୀଟି ତାର ପୂରା ରୂପ ନେଇଯିବ।"

ବୁଢ଼ୀଟି ତା ଜାଗାରେ ଥାଇ କହିଲା- "ତୋତେ ତ ଭୋକ ହୋଇ ନଥିବ ଆମେ ଟିକିଏ ପରେ ଖାଇବା।"

କିଛି ସମୟ ଚାଲିଗଲା। ବୁଢ଼ୀଟି ଭାବିଲା- "ଖାଇବା ବେଳ ହେଲାଣି। ଏଥର ଖାଇବା। ତେଣୁ ସେ କୁଡ଼ିଆ ଭିତରକୁ ଗଲା। ରନ୍ଧାପାତ୍ର ଉପରକୁ ନଇଁ ପଡ଼ିଲା। ସେ ଯାହା ଦେଖିଲା- ସେ ଆଶ୍ଚର୍ଯ୍ୟ। ପାତ୍ରରେ ଖଣ୍ଡିଏ ବି ମାଂସ ନାହିଁ। ପାତ୍ରଟି ପୂରା ପୂରି ଖାଲି ରହିଛି। ମା ପଚାରିଲା- ମାଂସ ସବୁ କୁଆଡ଼େ ଗଲା ?"

ପୁଅଟି କହିଲା ମୁଁ ବହୁ ପୂର୍ବରୁ ତୋତେ ଆସି ଖାଇବାକୁ କହୁଥିଲି। ତୁ କହିଲୁ ତର ତର ହେବା ଦରକାର ନାହିଁ। ଏହା ଭିତରେ ମାଂସ ଲଗା ଲଗି

ହୋଇ କୋକିଶିଆଳୀ ରୂପ ନେଇଗଲା । ତାପରେ କୋକିଶିଆଳୀ ତାର ଚମଡ଼ାକୁ ପିନ୍ଧି ପକାଇଲା ।



## କୁତ୍‌ଖ
### (ଇଟେଲ୍‌ମ୍ୟାନ୍ ରୂପକଥା)

ବହୁଦିନ ତଳେ ଜଣେ ଲୋକ ଥିଲା । ତା ନାଁ କୁତ୍‌ଖ । ତା ସ୍ତ୍ରୀର ନାଁ ମିତ୍ତି । ଦିନେ କୁତ୍‌ଖ ବନିଶୀଟି ନେଇ ସମୁଦ୍ରକୁ ଗଲା । ସେଠି ବନିଶୀ ପକାଇ ବହୁତ ମାଛ ଧରିଲା । ଛୋଟ ଛୋଟ ମାଛ ଯେତେ ପଡ଼ିଲେ, ସେ ସବୁକୁ ସମୁଦ୍ରରେ ଛାଡ଼ିଦେଲା । ବଡ଼ ବଡ଼ ଗୁଡ଼ିକ ରଖିଲା । ସେ ସବୁକୁ ତାର ସ୍ଲେଜ ଗାଡ଼ିରେ ଯୋଚି ଘରକୁ ଫେରିଲା ।

(ଋଷିଆର ତୁନ୍ଦ୍ରା ଅଞ୍ଚଳରେ ବରଫ ପଡ଼ିଗଲେ, ସେଥିରେ କୌଣସି ଗାଡ଼ି ଚାଲେ ନାହିଁ । ବରଫ ଉପରେ ଚାଲିବା ଚକହୀନ ଗାଡ଼ିକୁ ସ୍ଲେଜ କୁହାଯାଏ । ଏହାକୁ ପ୍ରାୟ କୁକୁରମାନେ ଟାଣନ୍ତି ।)

ବାଟରେ ସେ ମାଛମାନଙ୍କୁ କହିଲା- "ତୁମେ ମାନେ ଯଦି ଜୋରରେ ଏବଂ ଶୃଙ୍ଖଳିତ ଭାବରେ ଗାଡ଼ି ଟାଣିବ, ତାହାହେଲେ ବଢ଼ିଆ କରି ଖାଇବାକୁ ଦେବି । ଯେଉଁଠି ଗାଡ଼ିସବୁ ରହିବାର କଥା, ସେଠି ତମକୁ ଶୁଖିଲା ମାଂସ ଖଣ୍ଡେ ଲେଖାଏଁ ଦେବି ।"

ସେମାନେ ଘରକୁ ଆସିଲେ । ମିତ୍ତି ମଇଦା ଓ ମାଂସ ଏକାଠି ମିଶାଇ ସ୍ଲେଜ ଟାଣୁଥିବା ମାଛମାନଙ୍କ ପାଇଁ ରାନ୍ଧିଲା । ହାଣ୍ଡିଏ ସେଥିରୁ ନେଇ କୁତ୍‌ଖ ସ୍ଲେଜ ଗାଡ଼ିରେ ରଖିଲା । ପୁଣି ଘରୁ ବାହାରିଲା ।

କୁଦ୍‌ଖ ତାଙ୍କୁ ଠିକ୍ ଭାବରେ ଅଡ଼ଉ ଥିବାରୁ ସ୍ଲେଜରେ ଯୋଚା ହୋଇଥିବା ମାଛମାନେ ଖୁବ୍ ଜୋରରେ ଧାଉଁଥିଲେ । ଯେତେବେଳେ ସେମାନେ ଗୋଟିଏ ତୋଟା ପାଖକୁ ଆସିଲେ, ସେମାନେ କହିଲେ- "କୁତ୍‌ଖ,

ଆମକୁ ଭାରି ଭୋକ। ଆମକୁ ଖାଇବାକୁ ଦିଅ।"

"ଟିକିଏ ଆଗକୁ ନେଇଯାଅ। ମୁଁ ତୁମକୁ ଖାଇବାକୁ ଦେବି।" କୁତ୍‌ଖ କହିଲା।

ପୁଣି ସ୍ଲେଜରେ ଯୋଚା ହୋଇଥିବା ମାଛମାନେ ଖୁବ୍ ଜୋରରେ ଧାଇଁଲେ। ଆନନ୍ଦରେ କୁତ୍‌ଖ ହସିଲା।

ସେମାନେ ଗୋଟିଏ ଖାଲ ଭିତରକୁ ଆସିଲେ। ସେଠି ସ୍ଲେଜ ମାଛମାନେ ରହିଲେ ଏବଂ ପଚାରିଲେ- କୁତ୍‌ଖ, ଆମେ ଭୋକିଲା। ଆମକୁ ଖାଇବାକୁ ଦିଅ।

ମୋତେ ଟିକିଏ ଆଗକୁ ନେଇଯାଅ। ମୁଁ ତମକଥା ବୁଝିବି। କୁତ୍‌ଖ ଉତ୍ତର ଦେଲା।

ଏକଥା ଶୁଣି ସ୍ଲେଜରେ ଯୋଚା ହୋଇଥିବା ମାଛମାନେ ରାଗିଗଲେ। ସେମାନେ ଟିକିଏ ବିଚଳିତ ହୋଇ ପଡ଼ିଲେ। ସେଥିପାଇଁ ଦେହ ତାଙ୍କର ଟିକିଏ ହଲିଗଲା। ସିଧା ସେମାନେ ସମୁଦ୍ର ଆଡ଼କୁ ଧାଇଁଲେ।

କୁତ୍‌ଖ ଖୁବ୍ ଡ଼ରିଗଲା। ସେ ଚିତ୍କାର କଲା- ବନ୍ଦ କର। ମାଛମାନେ ବନ୍ଦ କର। ତମକୁ ସାଥି ସାଥି ଖାଇବାକୁ ଦେବି। ଆଉ ଡ଼େରି କରିବି ନାହିଁ।

ସ୍ଲେଜ ମାଛମାନେ ତା କଥା ଶୁଣିଲେ ନାହିଁ। ବନ୍ଦ ବି ହେଲେ ନାହିଁ। ପାଗଳ ଭଳି ସମୁଦ୍ର ଆଡ଼କୁ ଧାଇଁଲେ। କୁତ୍‌ଖ ଭୟଭୀତ ହୋଇ ସ୍ଲେଜରୁ ଡେଇଁ ପଡ଼ିବ ବୋଲି ଉଦ୍ୟମ କଲା। କିନ୍ତୁ ତାର ପାଦ ସ୍ଲେଜ ଦଉଡ଼ିରେ ଛନ୍ଦି ହୋଇଗଲା।

ସମୁଦ୍ର ପାଖରେ ପହଞ୍ଚି ସମୁଦ୍ର ମାଛମାନେ ସିଧା ସମୁଦ୍ରକୁ ଲମ୍ଫଦେଲେ।

କୁତ୍‌ଖ ବୁଡ଼ି ମଲା ନାହିଁ। ସୂତା ଖିଅକେ ସେ ରକ୍ଷା ପାଇଗଲା। ସେଇଦିନୁ ଆଉ କେବେ ହେଲେ ସେ ତାର ସ୍ଲେଜରେ ମାଛକୁ ଯୋଚେନାହିଁ।



# ପୃଥିବୀର ଲୋକକଥା



**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**, ପୋ: ଦାଘାଳ, ଜିଲ୍ଲା-ପୁରୀ

ସି.ଡ଼ି.ଏ. ସି-୩୨ ( ସେକ୍ଟର-୭ ), କଟକ-୧୪